ସମୟ ସ୍ରୋତରେ
ମନୁ ମନ୍ତବ୍ୟ—୧



# ଗୁଣ୍ଡଲିର ଜେଜେବାପା

ମନୁ ଦାଶ

ସମୟ ସ୍ରୋତରେ ମନୁ ମନ୍ତବ୍ୟ

# ଗୁହ୍ଲିର ଜେଜେବାପା

ମନୁ ଦାଶ

କୀର୍ତ୍ତି ପ୍ରକାଶନ
ମଧୁସୂଦନ ନଗର, କଟକ

ସମୟସ୍ରୋତରେ ମନୁ ମନ୍ତବ୍ୟ–୧

# ଗୁଡ଼ଲିର ଜେଜେବାପା

Samaya Srotarey Manu Mantabya

# Gudlira Zezebäpä

ସମସାମୟିକ ଘଟଣା ଉପରେ ଆଧାରିତ
ସ୍ତମ୍ଭସମୂହର ରୁଚିପୂର୍ଣ୍ଣ ସଂକଳନ

**Compilation of columns based on events of topical interest**

ଲେଖକ : ମନୁ ଦାଶ
by **Manu Dash**

୧୪-୬-୨୦୦୦, ରଜ ସଂକ୍ରାନ୍ତି
14-6-2000, Raza Samkranti

ପ୍ରଯୋଜନା, ପରିକଳ୍ପନା ଓ ମୁଦ୍ରଣ :
**ଯେକେ. ପ୍ରିଣ୍ଟର୍ସ୍**, କଟକ
Planning, Designing & Printing :
JK.Printers, Cuttack

**କୀର୍ତ୍ତି ପ୍ରକାଶନ**, କଟକ
**KEERTI PRAKASHAN**, Cuttack

## ପବିତ୍ରୋତ୍ସର୍ଗ

ମୋର

ଜେଜେବାପା

ସ୍ୱର୍ଗତ ଦୀନବନ୍ଧୁ ଦାଶଙ୍କ

ସ୍ମୃତିରେ



## କୃତଜ୍ଞତା

ଦୈନିକ 'ଧରିତ୍ରୀ' ଏବଂ 'ଅନୁପମ ଭାରତ'ର 'ସମୟ ସ୍ରୋତରେ...' ସ୍ତମ୍ଭରେ ଏସବୁ ଲେଖା ସ୍ଥାନିତ ହୋଇଛି ବିଭିନ୍ନ ସମୟରେ ।

ଏହି ଦୁଇ ସମ୍ବାଦପତ୍ରର କର୍ତ୍ତୃପକ୍ଷ ଓ ସମ୍ପାଦକଙ୍କୁ କୃତଜ୍ଞତାର ସହ ସ୍ମରଣ କରୁଛି ।

ଲେଖକ



# ସୂଚୀ

# ଶବ୍ଦର ମାୟା

ଶବ୍ଦ କେବଳ ଭାବର ବାହକ ନୁହେଁ, ସମୟର ପ୍ରତିନିଧି ବି। ସବୁ ସମୟରେ, ସବୁ ଭାଷାରେ ଶବ୍ଦର ମହିମା ବଦଳିବା ସମ୍ପର୍କରେ ଭାଷାବିତ୍‌ମାନେ ଆମକୁ ପରିଚିତ କରାଇପାରିବେ। ତ୍ରୁଟିପୂର୍ଣ୍ଣ ଶବ୍ଦ-ପ୍ରୟୋଗ କଥା ଏଠି କୁହାଯାଉନାହିଁ। ଦୈନନ୍ଦିନ ଜୀବନରେ ଆମେ ଅବଶ୍ୟ ଅନେକ ପ୍ରମାଦପୂର୍ଣ୍ଣ ଶବ୍ଦ ପ୍ରୟୋଗ କରିଥାଉ। ସେମାନଙ୍କ ଭିତରୁ କେତୋଟି ଶବ୍ଦ ଏଠି ଉଦାହରଣସ୍ୱରୂପ ନିଆଯାଇପାରେ, ଯଥାଃ ଧୂମ୍ରପାନ (ଧୂମପାନ), ପଞ୍ଚବାର୍ଷିକ (ପାଞ୍ଚବାର୍ଷିକ), ମର୍ମନ୍ତୁଦ (ମର୍ମତୁଦ)। ବନ୍ଧନୀରେ ସୂଚନା ଦିଆଯାଇଥିବା ଶବ୍ଦଗୁଡ଼ିକ ଯଦିଓ ସଠିକ୍ ଅଟେ, ତେବେ ସାଧାରଣ ପାଠକ ଏସବୁକୁ ଗ୍ରହଣ କରିବା ଲାଗି ଭ୍ରୂକୁଞ୍ଚନ କରିବେ– ଏଥିରେ ଆଶ୍ଚର୍ଯ୍ୟ ହେବାରେ କିଛି ନାହିଁ। ତେବେ କିଛି

ଶବ୍ଦର ରୂପ ଓ ଉଚ୍ଚାରଣରେ ଏପରି ପ୍ରମାଦ ଭାବ ପରିପ୍ରକାଶ କରିବାରେ ଅନ୍ତରାୟ ସୃଷ୍ଟି କରେ ନାହିଁ।

ଅବଲୀଳାକ୍ରମେ ଶବ୍ଦର ଅର୍ଥ କିଭଳି ବଦଳିଯାଏ, ତାହାର ଉଦାହରଣ ଆମେ ଇଙ୍ଗ୍ରାଜୀ ଭାଷାରୁ ପାଇପାରିବା। ତ୍ରୟୋଦଶ ଶତାବ୍ଦୀରେ 'ଗର୍ଲ୍' ଶବ୍ଦର ଅର୍ଥ ଥିଲା ଲିଙ୍ଗନିରପେକ୍ଷ— କୌଣସି ଯୁବକ ଅଥବା ଯୁବତୀ। ସେଥିଲାଗି ଦୁହିଁଙ୍କ ଭିତରେ ପାର୍ଥକ୍ୟ ଆଣିବା ପାଇଁ ଯୁବତୀମାନଙ୍କୁ 'ଗେ ଗର୍ଲ୍' (Gay Girl) ଏବଂ ଯୁବକମାନଙ୍କୁ 'ନେଭ୍ ଗର୍ଲ୍'(Knave Girl) କୁହାଯାଉଥିଲା। 'ନାଇସ୍' (Nice) ଶବ୍ଦର ଉତ୍ପତ୍ତି ଲାଟିନ୍ ଶବ୍ଦ 'ଅଜ୍ଞ' (Ignorant) ଓ ଇଙ୍ଗ୍ରାଜୀ ଶବ୍ଦ 'ବୋକା' ଅର୍ଥାତ୍ 'ଫୁଲିଶ୍' (Foolish) ଶବ୍ଦରୁ ହୋଇଛି। ପଞ୍ଚଦଶ ଶତାବ୍ଦୀରେ ଏହାର ଅର୍ଥ ଥିଲା 'ସମ୍ଭ୍ରମ' ବା 'କୟ୍' (Coy)। ଷୋଡ଼ଶ ଶତାବ୍ଦୀ-ବେଳକୁ 'ନାଇସ୍' ଶବ୍ଦର ଅର୍ଥ ବଦଳିଯାଇ 'ବାଛିବା ଢଙ୍ଗ'ରେ (Fas-tidious) ପରିଣତ ହୋଇଯାଇଥିଲା। ସେଇପରି 'ଇଡିଅଟ୍' (Idiot) ଶବ୍ଦର ଅର୍ଥ। ପ୍ରଥମେ ଏଇ ଶବ୍ଦକୁ ଅଶିକ୍ଷିତ ଲୋକଙ୍କ ପ୍ରତି ପ୍ରୟୋଗ କରାଯାଉଥିଲା। କାଳକ୍ରମେ ଏହାକୁ 'ଅଜ୍ଞ' ଓ ପରେ 'ବୋକା' ଏବଂ ପରିଶେଷରେ 'ମାନସିକ ଅପୂର୍ଣ୍ଣତା' ଥିବା ବ୍ୟକ୍ତିଙ୍କ ପ୍ରତି ପ୍ରୟୋଗ କରାଗଲା। ମୋଟ୍ ଉପରେ, ଶବ୍ଦର ଅର୍ଥ ତତ୍କାଳୀନ ସମୟର ଭାବକୁ ହିଁ ବହନ କରିଥାଏ। ଏକଦା ସୋଫିଷ୍ଟିକେଟେଡ୍ (Sophisticated) ଶବ୍ଦର ଅର୍ଥ ଥିଲା 'ମିଛ'। ମାତ୍ର, ଏବେ ଏହାର ଅର୍ଥ ବଦଳି 'ସମ୍ଭ୍ରାନ୍ତ' ହୋଇଯାଇଛି। 'ବ୍ୟାକ୍‌ଲଗ୍' (Backlog), 'କ୍ୱିଲ୍ଟ୍' (Quilt) ଓ 'ପ୍ରିଭେଣ୍ଟ୍' (Prevent) ଆଦି ଶବ୍ଦକୁ ଏଇ ପର୍ଯ୍ୟାୟରେ ନିଆଯାଇପାରେ। ପ୍ରାଚୀନ କାଳରେ ବିଶ୍ୱାସ କରାଯାଉଥିଲା— ବିଶ୍ୱର ପ୍ରତିଟି ଘଟଣା

ଗ୍ରହ ଓ ନକ୍ଷତ୍ରମାନଙ୍କ ଦ୍ୱାରା ପରିଗ୍ୱଳିତ । ସେଇ କାରଣରୁ, ୧୭୪୩ ମସିହାରେ ଇନ୍‌ଫ୍ଲୁଏନ୍‌ଜା ରୋଗର ସଂକ୍ରମଣର ଘଟଣାକୁ ତତ୍କାଳୀନ 'ଲଣ୍ଡନ୍ ମାଗାଜିନ୍' ଏହିପରି ବର୍ଣ୍ଣନା କରିଥିଲା: 'News from Rome of a Contagious Distemper raging there, called the Influenza' ନକ୍ଷତ୍ରମାନଙ୍କ କୁପ୍ରଭାବ (influence) ଯୋଗୁଁ ସୃଷ୍ଟ— ଏହି ବିଶ୍ୱାସରୁ 'ଇନ୍‌ଫ୍ଲୁଏନ୍‌ଜା' ରୋଗର ନାମକରଣ । ୧୮୮୪ ମସିହାରେ 'ବ୍ରୁୟରୋଜି ଓ୍ୱେଲ୍‌କମ୍ ଆଣ୍ଡ୍ କୋ' ନାମକ ଏକ ଔଷଧ କମ୍ପାନୀ 'ଟାବ୍‌ଲଏଡ୍' (tabloid) ନାମଟିକୁ ସେମାନଙ୍କ ବାଣିଜ୍ୟିକ ବ୍ୟବହାର ପାଇଁ ପଞ୍ଜିକୃତ କରାଇଥିଲେ । ମାତ୍ର ଊନବିଂଶ ଶତାବ୍ଦୀର ଶେଷ ଆଡ଼କୁ ଏଇ ଶବ୍ଦର ଆଉ ଏକ ଅର୍ଥ ବାହାରିଯାଇଥିଲା ବ୍ରିଟେନ୍‌ରେ– କ୍ଷୁଦ୍ର ଓ ସଙ୍କୁଚିତ (small and compressed) । ପରବର୍ତ୍ତୀ ସମୟରେ କ୍ଷୁଦ୍ର ଖବରକାଗଜକୁ 'ଟାବ୍‌ଲଏଡ୍' କୁହାଗଲା ଏବଂ ଏହା ଏତେ ଲୋକପ୍ରିୟ ହେଲା ଯେ ୧୯୦୩ରେ ଏଇ କମ୍ପାନୀକର୍ତ୍ତୃପକ୍ଷ ସେମାନଙ୍କ ସତ୍ୱ ସଂରକ୍ଷିତ କରିରଖିବା ପାଇଁ ନ୍ୟାୟାଳୟର ଦ୍ୱାରସ୍ଥ ହୋଇଥିଲେ । ମାତ୍ର ବିଚାରପତିଙ୍କ ରାୟ ଭିନ୍ନ ଥିଲା । ରାୟରେ ଦର୍ଶାଯାଇଥିଲା— ଏଇ ଶବ୍ଦଟି ଏତେ ଲୋକପ୍ରିୟ ହୋଇଯାଇଛି ଯେ ସେଥିରୁ କୌଣସି କ୍ଷତିପୂରଣ ଆଶା କରିବା ଠିକ୍ ହେବ ନାହିଁ । ସେବେଠୁ, ସମ୍ବାଦସଂସ୍ଥାଗୁଡ଼ିକ ଏଇ ଶବ୍ଦର ଏକଚ୍ଛତିଆ ପ୍ରଭୁତ୍ୱ ଜାହିର୍ କରିଛନ୍ତି । ନିକଟରେ 'ଅକ୍‌ସ୍‌ଫୋର୍ଡ୍ ଡିକ୍‌ଶ୍‌ନାରୀ ଅଫ୍ ସ୍ଲାଙ୍ଗ୍' ପ୍ରକାଶ ପାଇଛି । ଏଇ ଅଭିଧାନଟିରେ ପାଞ୍ଚଶହରୁ ଊର୍ଦ୍ଧ୍ୱ ଅଶ୍ଳୀଳ ଶବ୍ଦ ଓ ପ୍ରତିଶବ୍ଦ ରହିଛି ବୋଲି ପ୍ରକାଶ ପାଇଛି । ସଂକଳକ ଯୀନ୍ ଆଇଟୋଙ୍କ ମତରେ ପ୍ରତି ଭାଷାରେ ଅଶ୍ଳୀଳ ଶବ୍ଦ ଅଛି । ଏହା ପ୍ରତି ମଣିଷର ବ୍ୟକ୍ତିଗତ ଭାଷା;

କାରଣ, ଏହି ଶବ୍ଦ ଗୋଟିଏ ଗୋଷ୍ଠୀର ସବୁ ମଣିଷଙ୍କୁ ଏକାଠି ବାନ୍ଧିରଖେ । ପ୍ରତି ମଣିଷ ତା'ର ଯୁବକାବସ୍ଥାରେ ଏଇ ଅଶ୍ଳୀଳ ଶବ୍ଦଗୁଡ଼ିକୁ ଆବିଷ୍କାର କରେ । ସବୁ ସମୟରେ ଏଇ ପ୍ରକ୍ରିୟାଟିର ବିବର୍ତ୍ତନ ଚାଲିଛି । ରାଜସଭାର ବିଦୂଷକଙ୍କଠାରୁ ଆରମ୍ଭ କରି ବାଣିଜ୍ୟ ପାଇଁ ଦୂର ଦେଶକୁ ଯାଉଥିବା ସାଧବମାନେ ଏଇ ବ୍ୟକ୍ତିଗତ ଶବ୍ଦ ପ୍ରୟୋଗ କରି ଆସିଛନ୍ତି କେଉଁ ପ୍ରାଚୀନ କାଳରୁ– ଖାସ୍ ବାହାରର ଲୋକଙ୍କ ପାଟି ବନ୍ଦ କରିବାପାଇଁ । କୁହାଯାଏ, ଯେଉଁ ସମାଜ ଯେତେ ରକ୍ଷଣଶୀଳ ଅଶ୍ଳୀଳ ଶବ୍ଦ ତିଆରି କରିବାରେ ସେଇ ସମାଜର ନାଗରିକମାନେ ସେତିକି ସୃଜନକ୍ଷମ ।

ଏଇ ପରିପ୍ରେକ୍ଷୀରେ, ଓଡ଼ିଶାର ବିଭିନ୍ନ ପ୍ରାନ୍ତରେ ପ୍ରୟୋଗ କରାଯାଉଥିବା କେତେଗୁଡ଼ିଏ ଶବ୍ଦ ଅଥବା 'ବୋଲି' ସମ୍ପର୍କରେ ଏଠି କୁହାଯାଇପାରେ । ସାଧାରଣତଃ କଟକ ସହରବାସୀମାନେ କୌଣସି ବ୍ୟକ୍ତି ବିଶେଷ ଉପରେ ରୋଷ ପ୍ରକଟ କରିବାକୁ ଯାଇ 'ଭୂକ୍ଷୁଡ଼ି' ବୋଲି କହିଥାନ୍ତି । ଅନୁରୂପ ଭାବେ ଖୁସ୍‌ମିଜାଜ୍‌ରେ ଥିବାବେଳେ କୌଣସି ଶବ୍ଦର ଆରମ୍ଭରେ ଥିବା 'ନ'କୁ ହଟାଇ 'ଲ' ଆରୋପିତ କରି ଉଚ୍ଚାରଣ କରନ୍ତି । ଯଥାଃ "ଲ' ପଇସାକୁ ଲଅଟା ଲଡ଼ିଆ ଲବୁ ତ ଲେ ଲଇଲେ ଲାଇ' । ବେଳେବେଳେ ତାଚ୍ଛଲ୍ୟ ଅଥବା ପରିହାସ ଛଳରେ ଜଣେ ଅନ୍ୟ ଜଣକୁ (ସାଧାରଣତଃ ନାରୀଙ୍କୁ) "କେଡ଼େ ନାଲି !" ଓ "ପଦ୍ମିଡି ଯିବିକି ଆଉ !" ପରି ମନ୍ତବ୍ୟମାନ ଦେଇଥାଆନ୍ତି ।

କେଉଁଠି କେଉଁଠି ଗଞ୍ଜେଇକୁ ଦଳି ସିଗାରେଟ୍‌ରେ ଭର୍ତ୍ତିକରି ଟାଣିବାର ଦେଖାଯାଏ । ଏମିତି ସିଗାରେଟ୍‌କୁ ପୁରୀ ସହରରେ 'ଟିଡ଼ି' କହୁଥିବା ବେଳେ ବ୍ରହ୍ମପୁର ସହରରେ ଏହା 'ଜିକ୍ସ୍' ଭାବେ ଖ୍ୟାତ ।

ତେବେ ପୁରୀ ସହରରେ ପ୍ରଚଳିତ 'ବୋଲି' ସବୁଠାରୁ ଅଧିକ ଭାବୋଦ୍ଦୀପକ । କୌଣସି କ୍ଷୀଣକାୟ ଯୁବକ ଅନ୍ୟପ୍ରତି ନିଜର ବାହୁବଳ ପ୍ରୟୋଗ କଲେ ତାକୁ 'କଙ୍କି ପହିଲିମାନ' କୁହାଯାଏ । କୌଣସି ହୃଷ୍ଟପୁଷ୍ଟ ନାରୀକୁ ଅପେକ୍ଷାକୃତ ଦୁର୍ବଳଶରୀର ଯୁବକ ବିବାହ କରିଥିଲେ ପୁରୀରେ ଏହାକୁ 'ହେଭୀ ଇଞ୍ଜିନ୍‌କୁ କଣା ଡ୍ରାଇଭର୍' ବୋଲି କୁହାଯାଏ ।

ପୁରୀ ମନ୍ଦିରରେ ପ୍ରଚଳିତ ଅନେକ ରୀତିନୀତିକୁ ନେଇ ଅଲଗା ଅଲଗା ଭାଷାସବୁ ତିଆରି ହୋଇଛି । ରଥଯାତ୍ରା ବେଳେ ରଥାରୂଢ଼ ଡାହୁକର ଭାଷା ସ୍ୱତନ୍ତ୍ର ଓ ଅନନ୍ୟ । ଏକଦା 'ପୁରୀ ବୋଲି'ର ସଂକଳକ ସିଦ୍ଧେଶ୍ୱର ମହାପାତ୍ରଙ୍କ ପ୍ରଶଂସନୀୟ ଉଦ୍ୟମ ଯୋଗୁଁ ପୁରୀର 'ବୋଲି' ସମ୍ପର୍କରେ କେତୋଟି ଲେଖା ପ୍ରକାଶ ପାଇଥିଲା । ମାତ୍ର ଏ ସମ୍ପର୍କରେ ବିସ୍ତୃତ ଗବେଷଣା ହିଁ ଉକ୍ତ ଭାଷା ତଥା ଶବ୍ଦସମ୍ଭାରକୁ ବଞ୍ଚାଇ ରଖିପାରିବ ବୋଲି ଏ ଲେଖକର ମତ । ଅନ୍ୟଥା, ସମୟର କରାଳଗର୍ଭରେ ଏଇ ଶବ୍ଦସମ୍ଭାର ଦିନେ ନା ଦିନେ ହଜିଯିବ; ଆଉ ବିଚରା ମଣିଷ ଗୋଟାଏ ପାଳଭୂତ ପରି ଅସହାୟ ଦର୍ଶକଟିଏ ସାଜିଥିବ କେବଳ ।



# ଶ୍ରେୟ କାହାକୁ କହିବା ?

କିଛି ବର୍ଷ ପୂର୍ବେ ମୋ'ର ଜଣେ ବନ୍ଧୁ ଆକାଶବାଣୀର ସଂଗୀତ ବିଭାଗରେ ଗ୍ୱକିରୀ ପାଇଥା'ନ୍ତି । ସଂଯୋଗକ୍ରମେ ତାଙ୍କ ପିତାଙ୍କର ମଧ୍ୟ ସଂଗୀତ ଜଗତରେ ସୁନାମ ଥାଏ । ତେଣୁ ସଂଗୀତ ଜଗତ ତାଙ୍କ ପାଇଁ ଆଦୌ ନୂଆ ଇଲାକା ନଥିଲା । ଶୈଶବରୁ ସେ ରାଗ ଓ ରିଆଜ୍ ସହିତ ପରିଚିତ । ସମୟକ୍ରମେ ନୂଆନୂଆ ଗୀତକୁ ନେଇ ସଂଗୀତ ଦେବା ତାଙ୍କର ଏକରକମ ନିଶା ହୋଇଯାଏ । ନିଶା ସାଙ୍ଗକୁ ପେଶା, ବୃତ୍ତି ସହ ପ୍ରବୃତ୍ତି ଯଦି ସମାନ ହୋଇଯାଏ ବା ମେଳଖାଏ ତେବେ ତାକୁ ନିଶ୍ଚୟ ସୌଭାଗ୍ୟ କୁହାଯିବ ଆମ ରାଜ୍ୟରେ । ଥରେ ଲକ୍ଷ୍ୟ କଲି, ବନ୍ଧୁ ଗୋଟାଏ ପକେଟ୍ ଟେପ୍ ରେକର୍ଡ଼ର୍ କିଣିଛନ୍ତି ଏବଂ ଯୁଆଡ଼େ ଯାଆନ୍ତି (ଛୁଟିରେ ଘରକୁ ଅଥବା ଟୁର୍‌ରେ) ସେଇ ଟେପ୍ ରେକର୍ଡ଼ଟି ସାଙ୍ଗରେ ନେଇ ଯାଉଛନ୍ତି । ପରେ ଜାଣିଲି ଯେ ପ୍ରିୟବନ୍ଧୁଙ୍କ ମନକୁ କୌଣସି ସ୍ୱରଟିଏ ଆସିଗଲେ ସେ ତତ୍‌କ୍ଷଣାତ୍ ସେଇ ସ୍ୱରଟିକୁ ଗାଇ ରେକର୍ଡ଼୍ କରୁଛନ୍ତି । କୌଣସି ଗୀତର ସ୍ୱର କଲାବେଳେ ସେ ପୂର୍ବରୁ

ରେକର୍ଡ଼ିଙ୍ଗ୍ କରିଥିବା ସ୍ୱରର ସାହାଯ୍ୟ ନେଉଛନ୍ତି । ସଂଗୀତ ରଚନା ପାଇଁ ତାଙ୍କର ଏପ୍ରକାର ଉଦ୍ୟମକୁ ସେଦିନ ମୁଁ ଖୁବ୍ ତାରିଫ୍ କରିଥିଲି ମନେମନେ । କାରଣ, ସାହିତ୍ୟଜଗତରେ ବି ରାଧାନାଥ ରାୟ ଓ ଗୋପୀନାଥ ମହାନ୍ତିଙ୍କ ପରି ବିଶିଷ୍ଟ କବି ଓ ଔପନ୍ୟାସିକ ଏପରି ଟିପାଖାତା ନିଜ ପାଖରେ ସବୁବେଳେ ରଖୁଥିଲେ ଏବଂ କୌଣସି ସ୍ଥାନରେ ନୂଆ ଶବ୍ଦ ଅଥବା ଭାବଟିଏ ମନକୁ ଆସିଲେ, ତାକୁ ଟିପି ରଖୁଥିଲେ । ଶୀତୁଆ ସନ୍ଧ୍ୟାରେ ଧାନବିଲ, ବର୍ଷର ବିଭିନ୍ନ ସମୟରେ ଗଛପତ୍ରର ପରିବର୍ତ୍ତିତ ରଙ୍ଗ ଆଦି ବିଷୟ ସମ୍ପର୍କରେ ଟିପାଖାତାରେ ଲେଖିରଖିବାକୁ ଗୋପୀନାଥ ମହାନ୍ତି ମୋ' ପରି ତରୁଣମାନଙ୍କୁ ପରାମର୍ଶ ଦେଉଥିଲେ ।

ପ୍ରଭାବ ଓ ପ୍ଲାଗିଆରିଜ୍‌ମ୍ ଦୁଇଟିଯାକ ଏକାକଥା ନୁହେଁ । ଏଇ ପରିପ୍ରେକ୍ଷୀରେ ବିଶିଷ୍ଟ ଲେଖକ ଆଇଜାକ୍ ବେସିଭିକ୍ ସିଙ୍ଗର୍‌ଙ୍କ କଥା ମନକୁ ଆସେ । ନୋବେଲ୍ ପୁରସ୍କାର ଗ୍ରହଣ ସମୟରେ କ୍ଷୁଦ୍ର ଭାଷଣଟିଏ ଦେବା ଛଳରେ ସେଦିନ ସିଙ୍ଗର୍ କହିଲେ 'ଆପଣମାନେ ଗୋଟିଏ ବଡ଼ ସ୍ୱେରକୁ ଆଜି ପୁରସ୍କୃତ କଲେ ।' ନିଜ ଉଦ୍ଦେଶ୍ୟରେ ଏଇ ସମ୍ବୋଧନଟି କରିବା ବେଳେ ସମବେତ ଦର୍ଶକମାନେ କମ୍ ଗଦ୍‌ଗଦ୍ ହୋଇନଥିବେ ସେଇ ମୁହୂର୍ତ୍ତରେ । ମାତ୍ର ଅଳ୍ପ କେଇକ୍ଷଣ ମଧ୍ୟରେ ସେ ବୁଝାଇଦେଲେ କିପରି ବିଶ୍ୱର ପ୍ରତିଟି ସଫଳ ଲେଖକ, ଚିତ୍ରକର, ସଂଗୀତକାରଙ୍କ ପ୍ରେରଣାର ଉତ୍ସଟି ତା'ର ନିଜର ନୁହେଁ । ଖୁବ୍ ସତର୍କତାର ସହିତ ଲେଖକ ତା'ର ପ୍ରେରଣାପ୍ରସୂତ ସୃଜନକଳାଟିକୁ ପାଠକ ପାଖରେ ଉପସ୍ଥାପିତ କରେ । ବିଚରା ପାଠକ ତାହାର ଟେର୍ ବି ପାଏନି । ଛୋଟ ସ୍ୱେରଟିଏକୁ ଧରିବା ସହଜ । ମାତ୍ର ବଡ଼ ସ୍ୱେରଟି ପ୍ରାୟତଃ ଧରାପଡ଼େ ନାହିଁ ।

କିଛିଦିନ ତଳେ ଲେଖାଟିଏ ପଢୁଥିଲି । କିଛି ଲୋକପ୍ରିୟ ହିନ୍ଦୀ ଚଳଚ୍ଚିତ୍ର ସଂଗୀତ କିଭଳି ବିଦେଶୀ ସଂଗୀତରୁ ନକଲ କରାଯାଇଛି । ତନ୍ମଧ୍ୟରୁ କେତୋଟି ଉଦାହାରଣ ଦେବା ଏଠି ପ୍ରାସଙ୍ଗିକ ମନେହେବ । ମୋଜାର୍ଟ୍‌ଙ୍କ ଗ୍ଳିଶିତମ ସୀମ୍ଫୋନୀକୁ ନେଇ ଭାରତର ବିଶିଷ୍ଟ ସଂଗୀତ ନିର୍ଦ୍ଦେଶକ ସଲିଲ୍ ଚୌଧୁରୀ ସ୍ୱର କରିଥିଲେ— 'ଇତ୍‌ନା ନା ମୁଝ୍‌ସେ ତୁ ପ୍ୟାର ବଢ଼ା' । 'ଜାନୁଆର୍' ଚଳଚ୍ଚିତ୍ରରେ ଶମ୍ମି କପୂର୍ ଗାଇଥିବା ଗୀତ 'ହମ୍‌କୋ ହେଁ' ବିଶିଷ୍ଟ ବୀଟ୍‌ଲ୍‌ସ୍ ଗାୟକଙ୍କ ଗୀତ 'ଆଇ ଓ୍ୱାଣ୍ଟ୍ ଟୁ ହୋଲ୍‌ଡ୍ ଇଓର୍ ହ୍ୟାଣ୍ଡ୍'ରୁ ନିଆଯାଇଥିଲା । ଏଇ ପର୍ଯ୍ୟାୟର ଗୀତ ଓ ଚଳଚ୍ଚିତ୍ରର ଏକ ଦୀର୍ଘ ତାଲିକା ଦିଆଯାଇପାରିବ । ମାତ୍ର ଏସବୁରୁ ଆମେ ଏଇ ନିଷ୍କର୍ଷରେ ପହଞ୍ଚି ପାରିବା ଯେ ପାଶ୍ଚାତ୍ୟ ସଂଗୀତ, କଳା ଓ ସାହିତ୍ୟ ଭାରତୀୟମାନଙ୍କୁ ଖୁବ୍ ସହଜରେ ପ୍ରଭାବିତ କରିଥାଏ । କେହିକେହି ଏଇ ପ୍ରଭାବରୁ ଟିକେ ଦୂରକୁ ଯାଇ ସେମାନଙ୍କ ସୃଷ୍ଟିକର୍ମ ସମ୍ପାଦନ କରିଥା'ନ୍ତି, ମାତ୍ର ମୂଳ ଉତ୍ସଠାରୁ ଏମାନେ ସମ୍ପୂର୍ଣ୍ଣ ବିଚ୍ଛିନ୍ନ ହୋଇପାରନ୍ତି ନାହିଁ । ଏଚ୍.ଇ.ବିଲ୍‌ଙ୍କ 'ଇଣ୍ଡିଆନ୍ ଇଙ୍କ୍' ଉପନ୍ୟାସ ଯେ ଗୋପୀନାଥ ମହାନ୍ତିଙ୍କ ଉପନ୍ୟାସ 'ଦାନାପାଣି' ଲେଖିବାରେ ପ୍ରଭାବିତ କରିନାହିଁ, ଏକଥା ଆଜି ବିଶ୍ୱାସ କରିବା ଅସମୀଚୀନ ହେବ ।

ସୃଜନ ପ୍ରକ୍ରିୟାର ମୂଳମନ୍ତ୍ର ହେଉଛି ପ୍ରେରଣା । କିଛିଦିନ ତଳେ ଏ ଲେଖକ ଆକାଶବାଣୀର ଜଣେ ବରିଷ୍ଠ ଅଧିକାରୀଙ୍କଠାରୁ ତାଙ୍କର ଅଭିଜ୍ଞତାଟିଏ ଶୁଣିବାକୁ ପାଇଥିଲା । ଘଟଣାଟି ଏଇପରି । ଆକାଶବାଣୀର ଏକ ସ୍ୱତନ୍ତ୍ର ସଂଗୀତ ସମାରୋହର ପ୍ରଥମ ଶିଳ୍ପୀଭାବେ ବିଶିଷ୍ଟ ବଂଶୀବାଦକ ହରିପ୍ରସାଦ ଚୌରାସିଆଙ୍କୁ ଆମନ୍ତ୍ରଣ କରାଯାଇଥାଏ । କର୍ତ୍ତୃପକ୍ଷଙ୍କ ନର୍ଦ୍ଦେଶକ୍ରମେ ବରିଷ୍ଠ ଅଧିକାରୀ ଶ୍ରୀ ଚୌରାସିଆଙ୍କୁ ସ୍ୱାଗତ

ସମ୍ବର୍ଦ୍ଧନା ଜଣାଇବା ସହ ପାଛୋଟି ଆଣିବା ଲାଗି ଭୁବନେଶ୍ୱର ବିମାନଘାଟିକୁ ଯାଇଥା'ନ୍ତି ସେଦିନ ଦ୍ୱିପ୍ରହରରେ । ଏହାର ଆଉ ଏକ କାରଣ ବି ଥିଲା— ଶ୍ରୀ ଚୌରାସିଆଙ୍କ ସହ ବରିଷ୍ଠ ଅଧିକାରୀଙ୍କ ଘନିଷ୍ଠ ସମ୍ପର୍କ । ଭୁବନେଶ୍ୱରରୁ କଟକ ଫେରିବାରାସ୍ତାରେ ଫୁଲନଖରାଠାରୁ କିଛି ବାଟ ଯିବାପରେ, ଆଳାପରତ ଶ୍ରୀ ଚୌରାସିଆ ହଠାତ୍ କାର୍‌ଟିକୁ ଅଟକାଇବା ପାଇଁ ଡ୍ରାଇଭର୍‌କୁ କହିଲେ । ରାସ୍ତାକଡ଼ରେ ଗାଡ଼ିଟି ରହିଲା । ଶ୍ରୀ ଚୌରାସିଆଙ୍କ ସହ ବାହାରକୁ ବାହାରି ଆସିଲେ ବରିଷ୍ଠ ଅଧିକାରୀ । ସାମ୍ନାରେ ରାସ୍ତାକଡ଼ରେ ବସି ଅଳ୍ପ କେଇଟି ଲୋକଙ୍କ ସାମ୍ନାରେ କେନ୍ଦରା ଭଳି ବାଦ୍ୟଯନ୍ତ୍ରଟିଏ ବଜାଇବାରେ ବ୍ୟସ୍ତ ଜଣେ ପଥପ୍ରାନ୍ତ ଶିଳ୍ପୀ । ନିଜ ବାଦ୍ୟଯନ୍ତ୍ର ସ୍ୱରରେ ହଜିଯାଇଥିବା ଶିଳ୍ପୀଟିର ବାହାର ଜଗତ ସହିତ ଆଦୌ ସମ୍ପର୍କ ନାହିଁ ଯେପରି । ବେଶ୍ କିଛି ସମୟ ଯାଏଁ ଶ୍ରୀ ଚୌରାସିଆ ସେଇ ଅନାମଧେୟ ଶିଳ୍ପୀଟିର ସଂଗୀତ ରସାସ୍ୱାଦନ କଲେ । ପରେପରେ ଖୁସିରେ ସେଇ ଶିଳ୍ପୀଟିର ହାତରେ ଶହେଟଙ୍କିଆ ନୋଟ୍ ଖଣ୍ଡେ ଗୁଞ୍ଜି ଦେଇ ଗାଡ଼ି ଭିତରେ ବସି ପଡ଼ିଲେ । ବରିଷ୍ଠ ଅଧିକାରୀ, ଯିଏ ସଂଗୀତର ମହିମାରେ ନିଜକୁ ଆଦୌ ମଣ୍ଡିତ କରିନଥା'ନ୍ତି— ଏସବୁର ଗୂଢ଼ କଥା ଆଦୌ ବୁଝି ପାରୁନଥା'ନ୍ତି । ଏଣେ ବିସ୍ଫାରିତ ଶିଳ୍ପୀଟି ଖୁବ୍ ସଙ୍କୋଚରେ ଶ୍ରୀ ଚୌରାସିଆଙ୍କଠାରୁ ଟଙ୍କାଟି ନେଇ ତା'ର ଥଳିରେ ରଖୁଥାଏ । ତା'ର ସେଇ କେନ୍ଦରା-ସ୍ୱର ଶୁଣି କେହି କେବେ ଯେ ଏତେ ବିହ୍ୱଳ ହୋଇଯିବ— ଏପରି ଆଶା ସେ କାହିଁକି ଅବା କରିବ ? ଯାତ୍ରାର ବାକି ସମୟତକ ବିନା ବାକ୍ୟବିନିମୟରେ କଟିଲା । ଶ୍ରୀ ଚୌରାସିଆଙ୍କ ମୁଖମଣ୍ଡଳରେ ଲାଖି ରହିଥିଲା ଭାବପୂର୍ଣ୍ଣ ଗାମ୍ଭୀର୍ଯ୍ୟ ଓ ତୃପ୍ତିଜନିତ ଉଜ୍ଜ୍ୱଳତା— ଯାହା ଏବେବି ତାଙ୍କ ସ୍ମୃତିରେ ସତେଜ ବୋଲି

ଅଧିକାରୀ ଜଣକ ଏ ଲେଖକ ପାଖରେ ସ୍ୱୀକାର କରିଥିଲେ ।

ନିର୍ଦ୍ଧାରିତ କାର୍ଯ୍ୟକ୍ରମ ଅନୁସାରେ ସେଦିନ ସନ୍ଧ୍ୟାରେ ସମବେତ ଶ୍ରୋତାଙ୍କ ସାମ୍ନାରେ ଶ୍ରୀ ଚୌରାସିଆ ପରିବେଷଣ କଲେ ବଂଶୀବାଦନ । ସୁଲଳିତ-ସ୍ୱରକୁ ମନ୍ତ୍ରମୁଗ୍ଧ ହୋଇ ଶୁଣୁଥା'ନ୍ତି ସଭିଏଁ । ଉପସ୍ଥିତ ବରିଷ୍ଠ ଅଧିକାରୀଙ୍କର ହଠାତ୍ ମନେହେଲା ଶ୍ରୀ ଚୌରାସିଆଙ୍କ ବଂଶୀର ସ୍ୱରତାଳ ସହ ପୂର୍ବାହ୍ନରେ ସେଇ ପଥପ୍ରାନ୍ତ କେନ୍ଦରା ଶିଳ୍ପୀର ସ୍ୱରତାଳର ଅଦ୍ଭୁତ ସଂଯୋଗ ରହିଛି ଯେମିତି । ଚକିତ ହୋଇ ଯାଇଥିଲେ ସେ । ତେବେ ଜଣେ ବିଶିଷ୍ଟ ଶିଳ୍ପୀ କିପରି ଆଉ ଜଣେ ଅନାମଧେୟଠାରୁ ପ୍ରେରଣା ପାଇପାରେ ତା'ର ଉଦାହରଣ ଦେବା ଏହି ଅବତାରଣାର ଉଦ୍ଦେଶ୍ୟ ମାତ୍ର । ଶିଳ୍ପୀ ବାସ୍ତବିକ ମହୁମାଛିଟିଏ ପରି । ଫୁଲରୁ ମହୁ ସଂଗ୍ରହ କରି ଅନ୍ୟକୁ ପରଷିବା ତା'ର ଧର୍ମ । ମଧୁପ ମଣିଷ କେବେବି ହିସାବ ରଖେନି, କେଉଁ ଫୁଲରୁ ଗ୍ରେରାଇ ଆଣିଛି ମହୁମାଛିଟିଏ ତା'ପାଇଁ ଏ ଅମୃତବିନ୍ଦୁ ।

ଆମ ଦେଶରେ ବହୁ ବୈଚିତ୍ର୍ୟର ସମାହାର ଘଟିଛି । ତେବେ ମୁଖ୍ୟମନ୍ତ୍ରୀ, ପ୍ରଧାନମନ୍ତ୍ରୀ ଓ ରାଜନୈତିକ ନେତୃବର୍ଗ ଯେଉଁଠି କୋଟିକୋଟି ଟଙ୍କା ହଡ଼ପ୍ କଲା ପରେ ବି ସେମାନଙ୍କୁ ଗ୍ରେର କହିବାକୁ ଆମକୁ ଭୟ ଲାଗୁଚି, ସେଠାରେ ଜଣେ ଶିଳ୍ପୀ ଅନ୍ୟ ଜଣେ ଶିଳ୍ପୀର ସୃଷ୍ଟିରେ ପ୍ରଭାବିତ ହୋଇ ଯଦି ସୃଜନ ପ୍ରକ୍ରିୟାରେ ନୂତନତ୍ୱର ବାଟ ଦେଖାଏ ତେବେ ଆମେ ତାକୁ 'ଗ୍ରେର' କହିବା କିପରି ?



# ଋତୁ ପରିବର୍ତ୍ତନ

"ଆପଣଙ୍କ ଲେଖା ପ୍ରାୟତଃ ପଢୁଚି ଖବର କାଗଜ ପୃଷ୍ଠାରେ । କିଛି ପଇସାପତ୍ର ପାଉଛନ୍ତି ନା ଘରୁ ଖାଇ ଘୋଡ଼ା ଆଗରେ ନାଚୁଛନ୍ତି ?"— ଜଣେ ବନ୍ଧୁ ପ୍ରଶ୍ନ କଲେ । ଅନେକ ଦିନ ପରେ ତାଙ୍କ ସହ ଭେଟ । ତାଙ୍କୁ ଉତ୍ତର ଦେବାକୁ ଯାଇ ଅନିଚ୍ଛା ସତ୍ତ୍ୱେ ଓଠରେ ହସଟିଏ ଖେଳାଇବାକୁ ପଡ଼ିଲା । ହସ ନ ଲିଭୁଣୁ ମନେ ପଡ଼ିଲା, ଓଡ଼ିଶାରେ ପ୍ରଚଳିତ ଧାରଣାଟି ସମ୍ପର୍କରେ । ତା' ହେଉଛି ଲକ୍ଷ୍ମୀ ଓ ସରସ୍ୱତୀଙ୍କ ଭିତରେ ଚ୍ୱଲିଥିବା କଳହ କଥା । ଜଣେ ବିଦ୍ୟାଦାତ୍ରୀ ଏବଂ ଆଉ ଜଣେ ଧନ ଓ ସମ୍ପଦ ପ୍ରଦାୟିନୀ । ଜଣେ ପରକାଳ ବା ଚିରକାଳର ଏବଂ ଆର ଜଣକ ଇହକାଳର ପୂଜାରିଣୀ । ଲକ୍ଷ୍ମୀଉପାସକକୁ ସରସ୍ୱତୀ ଆଡ଼ଆଖିରେ ସୁଦ୍ଧା ଚ୍ୱହାଁନ୍ତି ନାହିଁ । ଆଉ ଯେଉଁମାନେ ସରସ୍ୱତୀଙ୍କୁ ଉପାସନା କରନ୍ତି, ଲକ୍ଷ୍ମୀ ସେମାନଙ୍କୁ ପରିହାସ କରନ୍ତି । ଏଇ ଯୁକ୍ତିଟିକୁ ଅଧିକ ବଳିଷ୍ଠ କରିବାକୁ ଯାଇ କେତେକ ଫକୀର ମୋହନଙ୍କ କବିତାର ପଙ୍‌କ୍ତିଟିଏର ବାରମ୍ବାର ସାହାଯ୍ୟ ନେଇଥାନ୍ତିଃ "ଦେଶୀ ସାହିତ୍ୟ ଯେ

ବଣିଜ କଲା, ଜାଣି ଥା' ସେଇ ଲୋକଟି ମଲା।'' ଅବଶ୍ୟ ଏଠି ଫକୀର ମୋହନ 'ଦେଶୀ ସାହିତ୍ୟ' ଅର୍ଥ ଓଡ଼ିଆ ସାହିତ୍ୟ କଥା ହିଁ କହିଛନ୍ତି। ଫକୀର ମୋହନ ଯେ ଜଣେ ଅସଫଳ ବ୍ୟବସାୟୀ ଥିଲେ ତା'ର ପ୍ରମାଣ ଇତିହାସରୁ ଆମେ ପାଇସାରିଛୁ। ଆଜି ଯଦି ଫକୀର ମୋହନ ବଞ୍ଚିଥା'ନ୍ତେ ଏବଂ କଟକର 'ବାଲୁବଜାର' ଆଡ଼େ ବୁଲି ଆସିଥା'ନ୍ତେ–ତେବେ ତାଙ୍କୁ ଏଇ କବିତା ଧାଡ଼ିଟିକୁ ନିଶ୍ଚିତ ଭାବେ ବଦଳାଇବାକୁ ପଡ଼ିଥାନ୍ତା ବୋଲି ମୋ'ର ଧାରଣା।

ପୂର୍ବେ ଲକ୍ଷ୍ମୀ ଏବଂ ସରସ୍ୱତୀଙ୍କ ସମ୍ପର୍କ ମଧୁର ନଥିବା କଥା ଆମେ ଜାଣୁ। ମାତ୍ର ଏବେ ଋତୁ ପରିବର୍ତ୍ତନ ହୋଇଯାଇଛି। ପୂର୍ବର ଅସଫଳତା ଏବେ ମଧୁର ସମ୍ପର୍କରେ ବଦଳିଛି, ଠିକ୍ ଦୁଇଟି ପରସ୍ପର ବିରୋଧୀ ଆଜିର ରାଜନୈତିକ ଦଳ ପରି। ଇତିହାସରୁ ଆମେ ରାଜନୈତିକ ଦଳଗୁଡ଼ିକର ପଟ୍ଟ ପରିବର୍ତ୍ତନ ସମ୍ପର୍କରେ ଅବଗତ ହୋଇପାରିବା। ଠିକ୍ ସେଇପରି ଲକ୍ଷ୍ମୀ ସରସ୍ୱତୀଙ୍କ ସୁସମ୍ପର୍କର ନମୁନା ମଧ୍ୟ ଆମ ପାଖରେ ଆଜି ବିରଳ ନୁହେଁ। ନିକଟରେ ଭାରତର କିଛି ଔପନ୍ୟାସିକଙ୍କ ଉପନ୍ୟାସରୁ ପାଇଥିବା ଟଙ୍କାର ହିସାବ ବାହାରି ଥିଲା। 'ଏ ସୁଟେବ୍‌ଲ୍ ବୟ୍' ଉପନ୍ୟାସ ପାଇଁ ବିକ୍ରମ୍ ଶେଠ୍‌ଙ୍କୁ ମିଳିଥିଲା ୨ଲକ୍ଷ ୫୦ ହଜାର ଡଲାର୍ ଅଗ୍ରୀମ। ଠିକ୍ ସେହିପରି ଅରୁନ୍ଧତୀ ରାୟ୍ ତାଙ୍କର ବୁକର୍ ପୁରସ୍କାରପ୍ରାପ୍ତ ବହି 'ଦି ଗଡ୍ ଅଫ୍ ସ୍ମଲ୍ ଥିଙ୍ଗ୍‌ସ୍' ପାଇଁ ଦୁଇକୋଟି ଟଙ୍କା ଅଗ୍ରୀମ ପାଇ ରାତାରାତି କୋଟିପତି ହୋଇପାରିଛନ୍ତି। ଗୋଟିଏ ବହି ଲେଖିଲେ ଶୋଭା ଦେ' ପାଆନ୍ତି ଏକଲକ୍ଷ ଟଙ୍କା। ଖୁସ୍‌ବନ୍ତ୍ ସିଂ ନିଜର ପ୍ରତି ପୁସ୍ତକ ପାଇଁ ଦାବି କରନ୍ତି ପଚାଶ ହଜାର ଟଙ୍କା। ନିକଟରେ ବିଶିଷ୍ଟ ଔପନ୍ୟାସିକା ଅନିତା

ଦେଶାଇଙ୍କ ଚବିଶବର୍ଷ ବୟସ୍କା କନ୍ୟା କିରଣ ଦେଶାଇଙ୍କ ଉପନ୍ୟାସ 'ହଲ୍ଲାବାଲ୍ଲୁ ଇନ୍ ଗ୍ୱାଭା ଅର୍‌ଗ୍ୱର୍ଡ୍' ପାଇଁ ତାଙ୍କୁ ପଗ୍ୱଶ ଲକ୍ଷ ଟଙ୍କା ଅଗ୍ରୀମ ମିଳିଛି । ଏମାନଙ୍କ ବ୍ୟତୀତ ଅମିତାଭ୍ ଘୋଷ୍, ଉପମନ୍ୟୁ ଗ୍ୱଟାର୍ଜୀ, ମୁକୁଲ୍ କେଶବନ୍, ଶଶୀ ଥରୁର୍ ଓ ଆହୁରି ଅନେକେ କେବଳ ଯଶ ନୁହେଁ ଅର୍ଥ ମଧ୍ୟ ଅର୍ଜନ କରୁଛନ୍ତି ସେମାନଙ୍କ ଲେଖା ମାଧ୍ୟମରେ । ଏସବୁ କହିବାର ଏକମାତ୍ର ଉଦ୍ଦେଶ୍ୟ ହେଉଛି ଅବସ୍ଥା ଅନେକ ବଦଳି ଯାଇଛି ଓ ଏବେ ଜଣେ ସାହିତ୍ୟକୁ ସାହାରା କରି ଜୀଇଁ ପାରିବ । ସାହିତ୍ୟକୁ ନେଇ ବଞ୍ଚିବାର ବାଟ ଖୋଜନ୍ତି ବଙ୍ଗଳାର ଯଶସ୍ୱୀ ସାହିତ୍ୟ-ରଥୀମାନେ । ଅନେକ ବନ୍ଧୁଙ୍କଠାରୁ ଶୁଣିଛି ଶ୍ରୁତିରୋଚକ କାହାଣୀ । କାହାଣୀ ନୁହେଁ ସତକଥା । ପୂଜାସଂଖ୍ୟା ପ୍ରକାଶ ପାଇବାର ଅନେକ ମାସ ଆଗରୁ ପ୍ରତିଷ୍ଠିତ ପତ୍ରିକାର କର୍ତ୍ତୃପକ୍ଷ ନିଜକୁ ଭଲ ଲାଗୁଥିବା ଲେଖକମାନଙ୍କୁ ଅଗ୍ରୀମ ଦିଅନ୍ତି ଏକ ଉପନ୍ୟାସ ପୂଜାସଂଖ୍ୟାରେ ପ୍ରକାଶ କରିବା ଲାଗି । ଏହାଛଡ଼ା ଦାର୍ଜିଲିଙ୍ଗ୍ ଅଥବା ଉଟୀ ଭଳି ସୁନ୍ଦର ସ୍ଥାନଗୁଡ଼ିକରେ ଲେଖା ସରିବା ପର୍ଯ୍ୟନ୍ତ ଲେଖକଙ୍କର ରହିବା ଓ ଅନ୍ୟାନ୍ୟ ଯାବତୀୟ ଖର୍ଚ୍ଚ ବହନ କରନ୍ତି ଏଇ ପତ୍ରିକାଗୁଡ଼ିକ । ଅବଶ୍ୟ କବିତା ରଚନା ପାଇଁ ଏପରି ବିପୁଳ ଅର୍ଥ ପ୍ରଦାନ ବ୍ୟବସ୍ଥା ପ୍ରାୟତଃ କୌଣସିଠାରେ ଦେଖାଯାଏ ନାହିଁ ।

ଏଥର 'ସ୍ତମ୍ଭ ରଚନା' କଥା ଦେଖାଯାଉ । ନିକଟରେ ଜଣେ ବନ୍ଧୁ ପରିହାସ ଛଳରେ କହିଲେ: "ଯେଉଁମାନେ କବିତା ସୃଷ୍ଟି କରିବାରେ ଅସଫଳ ରୁହନ୍ତି, ସେମାନେ ଗଳ୍ପରେ ହାତ ଦିଅନ୍ତି ଏବଂ, ଯେଉଁମାନେ ଗଳ୍ପରେ ନିଜକୁ ପ୍ରକାଶ କରିବାରେ ବିଫଳ ରୁହନ୍ତି, ସେମାନେ 'ସ୍ତମ୍ଭ' ପାଇଁ ଲେଖନ୍ତି ।" ଏହା କେତେଦୂର ଯଥାର୍ଥ, ତା'ର ବିବେଚନା କରିବା

ଏ ଲେଖକର ସାମର୍ଥ୍ୟର ବାହାରେ । ମାତ୍ର ଗୋଟିଏ ପ୍ରଶ୍ନ ମନ ଭିତରକୁ ବାରମ୍ବାର ପଶିଆସେ: କଥାକାର ସୁରେନ୍ଦ୍ର ମହାନ୍ତି କ'ଣ ଗଳ୍ପରେ ଅସଫଳ ହେବାରୁ 'ସ୍ତମ୍ଭ' ('ସମ୍ବାଦ'ର ଶେଷପୃଷ୍ଠାରେ ଧାରାବାହିକ ଭାବରେ ପ୍ରକାଶିତ ତାଙ୍କର 'ଶେଷସ୍ତମ୍ଭ') ଲେଖିଲେ ? ବିଶିଷ୍ଟ ଗାଳ୍ପିକ ମନୋଜ ଦାସ 'ଧରିତ୍ରୀ' ପୃଷ୍ଠାରେ 'କେତେ ଦିଗନ୍ତ' ଲେଖୁଥିଲେ କ'ଣ ଗଳ୍ପ ରଚନାରେ ଅସଫଳ ହେବାରୁ ? ସ୍ତମ୍ଭ ରଚନା ଏକ ସୃଜନଶୀଳ ସାହିତ୍ୟକର୍ମ କି ନୁହେଁ, ସେ ନେଇ ଏ ଲେଖକ ଆଦୌ ବିବ୍ରତ ନୁହେଁ । ସେ ସବୁ ସମୟ ହାତରେ ସମର୍ପି ଦିଆଯାଉ । ତେବେ ବିଶ୍ୱ ସାହିତ୍ୟ ଜଗତରେ ସ୍ତମ୍ଭକାରମାନଙ୍କର ପ୍ରଭାବକୁ ଆଦୌ ଗୌଣ ବୋଲି ଗ୍ରହଣ କରାଯାଇ ପାରିବ ନାହିଁ । ନିକଟରେ କ୍ରିସ୍‌ଟୋଫର୍ ସିଲ୍‌ଭେସ୍‌ଟର୍‌ଙ୍କ ସମ୍ପାଦନାରେ 'ଦି ପେଙ୍ଗୁଇନ୍ ବୁକ୍ ଅଫ୍ କଲମ୍‌ନିଷ୍ଟ' ପୁସ୍ତକ ପ୍ରକାଶ ପାଇଛି । ଏଥିରେ ସମୁଦାୟ ଶହେଖ୍ୱଳିଶି ଜଣ ସ୍ତମ୍ଭକାରଙ୍କ କୃତିକୁ ସନ୍ନିବେଶିତ କରାଯାଇଛି । ୧୮୯୦ ମସିହାରେ 'ଚିକାଗୋ ଡେଲୀ ନିଉଜ୍' ଖବରକାଗଜ ପାଇଁ ଲେଖୁଥିବା ଇଉଜିନି ଫିଲ୍‌ଡ୍ ହେଉଛନ୍ତି ବିଶ୍ୱର ପ୍ରଥମ ସ୍ତମ୍ଭକାର । ଖାଲି ସେତିକି ନୁହେଁ, ବିଶ୍ୱ ସମ୍ବାଦପତ୍ରକୁ ଆହୁରି କିଛି ଗୁରୁତ୍ୱପୂର୍ଣ୍ଣ ଆମେରିକୀୟ ଅବଦାନ ଅଛି: ଯଥା, ସାକ୍ଷାତକାର (interview) ଓ ଶବ୍ଦଧନ୍ଦା (crossword puzzle) । ସେଇଥିପାଇଁ ଆମେରିକାକୁ 'ସ୍ତମ୍ଭମାନଙ୍କ ପାଇଁ ଏକ ସ୍ୱର୍ଣ୍ଣଭୂମି' ବୋଲି କୁହାଯାଇଥାଏ । ବ୍ରିଟିଶ ସ୍ତମ୍ଭକାରଙ୍କ ଅପେକ୍ଷା ଆମେରିକାନ୍ ସ୍ତମ୍ଭକାର ଅଧିକ ବଳିଷ୍ଠ ପ୍ରଦର୍ଶନ କରିଥା'ନ୍ତି ସେମାନଙ୍କ ଲେଖାରେ । ତେବେ ବ୍ରିଟେନ୍‌ର ଓବେରନ୍ ୱ୍ (Auberon Waugh)ଙ୍କୁ ଆଜିକାଲିର ଜଣେ ବିଶିଷ୍ଟ ସ୍ତମ୍ଭକାର ଭାବେ ଗ୍ରହଣ କରାଯାଇଥାଏ । ଏବେ ଆମେରିକାର ପ୍ରସିଦ୍ଧ ସ୍ତମ୍ଭକାର ଅର୍ଟ୍

ବୁଚ୍‌ୱାଲ୍‌ଡ୍ (Art Buchwald), ୧୯୬୨ରୁ ନିୟମିତ ସ୍ତମ୍ଭ ଲେଖିଆସୁଛନ୍ତି । ସ୍ତମ୍ଭକାରମାନେ ସ୍ତମ୍ଭଟିଏ ଲେଖିସାରିବା ପରେ ବହୁ ସମ୍ବାଦପତ୍ର ତାକୁ ଅବିକଳ ଛାପିବା ଧାରାଟି (Syndication System) ଆମେରିକାନ୍ ସ୍ତମ୍ଭକାରମାନଙ୍କୁ ଲୋକପ୍ରିୟ କରିବା ସଙ୍ଗେସଙ୍ଗେ ବିତ୍ତଶାଳୀ ବି କରିପାରିଛି । ଏଇଥିପାଇଁ ଜଣେ ସଫଳ ସ୍ତମ୍ଭକାର ତା'ର ବୃତ୍ତିରୁ ଦୂରେଇଯିବାକୁ ଚାହେଁନାହିଁ । ୧୯୩୧ ମସିହାରେ ଆମେରିକାର ବିଶିଷ୍ଟ ସ୍ତମ୍ଭକାର ୱାଲ୍‌ଟର୍ ଲିପ୍‌ମାନ୍‌ଙ୍କୁ (Walter Lippmann) 'ନିଉ ୟର୍କ୍ ହେରାଲ୍‌ଡ୍ ଟ୍ରିବ୍ୟୁନ୍' ସ୍ତମ୍ଭ-ରଚନା ପାଇଁ ବାର୍ଷିକ ୩୩ ହଜାର ଡଲାର୍ ଦେବା ସହ ତାଙ୍କର ଯାବତୀୟ ଖର୍ଚ୍ଚ ବହନ କରୁଥିଲା । ଏହାଛଡ଼ା ଜଣେ ସହାୟକ, ବର୍ଷକୁ ଗବେଷଣା ପାଇଁ ତିନିମାସ ଛୁଟି ଏବଂ ଅନ୍ୟାନ୍ୟ ସମ୍ବାଦପତ୍ରରେ ଉକ୍ତ ଲେଖା ପ୍ରକାଶ ପାଇଲେ ଶତକଡ଼ା ପଚାଶ ଭାଗ ରୟାଲ୍‌ଟୀ ଦେଉଥିଲେ । ଏପରି ବୁଝାମଣା ହେବାର ମାତ୍ର ଗୋଟିଏ ବର୍ଷ ପରେ ଦେଖାଗଲା, ଆମେରିକାର ଶହେଟି ଖବରକାଗଜରେ ତାଙ୍କର ଲେଖା ପ୍ରକାଶ ପାଉଛି ଏବଂ ଖବରକାଗଜର ଏକତ୍ର ପ୍ରସାରଣ ସଂଖ୍ୟା ଏକକୋଟିକୁ ବୃଦ୍ଧି ପାଇଛି । କୁହାଯାଇଥାଏ, ଗତକାଲିର ସମ୍ବାଦପତ୍ରଠାରୁ ଅଧିକ ମୃତ କିଛି ନାହିଁ । ମାତ୍ର ସିଲ୍‌ଭେଷ୍ଟର୍‌ଙ୍କ ସମ୍ପାଦିତ ବହିଟି ଏହାକୁ ଭୁଲ୍ ପ୍ରମାଣିତ କରିଛି ।

ଯଦିଓ ଓଡ଼ିଆ ଭାଷାରେ ଏପରି ସମ୍ଭାବନା କ୍ଷୀଣ, ତେବେ ବି ମନେରଖିବାକୁ ହେବ ଯେ, ସ୍ତମ୍ଭ-ରଚନା ଦିଗଟି ଆମ ଭାଷାରେ ଏବେବି କୁହୁଡ଼ି ଘେରରେ ଥିବା ବତୀଘର ପରି । ତେବେ କୁହୁଡ଼ି ଯେ କ୍ଷଣସ୍ଥାୟୀ, ଏକଥା କାହାକୁ ବୁଝାଇବାକୁ ପଡ଼ିବନି ।



# ହଳଦୀବସନ୍ତର ଗୀତ

କିଛି ବର୍ଷ ପୂର୍ବେ ଏକ ବିଦେଶୀ ପତ୍ରିକାରେ ଭାରତର ଜଣେ ପ୍ରମୁଖ କଥାକାର କର୍ତ୍ତାର୍ ସିଂ ଦୁଗଲ୍‌ଙ୍କର 'ଉଇମିନ୍ ଲିବ୍' ଶୀର୍ଷକ ଏକ ଗଳ୍ପ ଏ ଲେଖକ ପଢ଼ିବାର ସୁଯୋଗ ପାଇଥିଲା । ଗଳ୍ପଟିର ସାରାଂଶ ହେଉଛି ଏଇପରିଃ ଜଣେ ସ୍ୱାଧୀନଚେତା ଉଚ୍ଚଶିକ୍ଷିତା ଆଧୁନିକ ସଭ୍ୟତାର ବଶବର୍ତ୍ତୀ ହୋଇ ଅଧ୍ୟାପକ-ସ୍ୱାମୀଙ୍କୁ ନିର୍ଯାତନା ଦିଅନ୍ତି । ଶେଷରେ ମାନସିକ ସନ୍ତୁଳନ ହରାଇଥିବା ସ୍ୱାମୀଙ୍କର ମୃତ୍ୟୁ ହୁଏ । ଉକ୍ତ ଉଗ୍ରାଧୁନିକା ନିଜର ଶିଶୁକନ୍ୟାକୁ ଲାଳନପାଳନରେ ଏପରି ସ୍ୱାଧୀନତା ଦିଅନ୍ତି ଯେ କନ୍ୟାଟି ଶେଷରେ ସ୍ୱେଚ୍ଛାଚାରିଣୀ ହୋଇଯାଏ । ନାରୀ ଓ ପୁରୁଷ ଭିତରେ କୌଣସି ପାର୍ଥକ୍ୟ ଦେଖୁ ନଥିବା କନ୍ୟାଜଣକ ପ୍ରାକ୍‌ଯୌବନରେ ନାଇଟ୍ କ୍ଲବ୍‌ରୁ ରାତିର ବିଳମ୍ବିତ ପ୍ରହରରେ ପ୍ରାୟ ସବୁଦିନ ଫେରନ୍ତି । କାଳକ୍ରମେ

ସେ ଜଣେ ଶିଳ୍ପପତିଙ୍କୁ ବିବାହ କରନ୍ତି । ପରବର୍ତ୍ତୀ ସମୟରେ ଏଇ ଶିଳ୍ପପତି ଯୁବକ ପ୍ରତିରାତିରେ ପ୍ରଚୁର ମଦ୍ୟପାନ କରି ଘରକୁ ଫେରନ୍ତି ଓ ପତ୍ନୀଙ୍କୁ ଅକଥନୀୟ ନିର୍ଯାତନା ଦିଅନ୍ତି । ଗଳ୍ପଟିରେ ଅନୁରୂପ ଭାବେ ବଢ଼ିଥିବା ଉପରୋକ୍ତ ମହିଳାଙ୍କ ଭଗ୍ନୀକନ୍ୟାଙ୍କ ଜୀବନ ସମ୍ପର୍କରେ ମଧ୍ୟ ସବିଶେଷ ବର୍ଣ୍ଣନା ରହିଚି । ତଥାକଥିତ ଆଧୁନିକ ଉଗ୍ରବାଦ କିପରି ମଣିଷକୁ ସ୍ୱାଧୀନତା ପରିବର୍ତ୍ତେ ଦୁର୍ଭାଗ୍ୟ ଆଡ଼କୁ ଟାଣିନିଏ ତା'ର ଏକ ସୁନ୍ଦର ଚିତ୍ର ଦେଇଛନ୍ତି ଶ୍ରୀ ଡୁଗଲ୍ । ସମାଜସଂସ୍କାର ପାଇଁ ବେଶ୍ କଳାତ୍ମକ ଭଙ୍ଗୀରେ ଗାଳ୍ପିକ ଗଳ୍ପଟିରେ ଆବେଦନ କରିଛନ୍ତି ।

ଏ କଳାତ୍ମକ ପରିପ୍ରକାଶ କ'ଣ ? ଏ ସମ୍ପର୍କରେ ନାନା ମୁନିଙ୍କର ନାନା ମତ । "ତୁମେ ତୁମର ଘର ଛାଡ଼ିଯିବା ଦରକାର ନାହିଁ । ଟେବୁଲ୍ ସାମ୍ନାରେ ବସି ରୁହ, ଶୁଣ, କେବଳ ଅପେକ୍ଷା କର । ତୁମର ଅପେକ୍ଷା କରିବା ଆଦୌ ଦରକାର ନାହିଁ, କେବଳ ନୀରବ, ନିଶ୍ଚଳ ଓ ନିସଙ୍ଗ ହେବା ଲାଗି ଶିଖ । ପୃଥିବୀ ଆପଣାଛାଏଁ ନିଜକୁ ତମ ପାଖରେ ଖୋଲିଦବ । ତାହାର ଅନ୍ୟଗତି ନାହିଁ । ତୁମ ପାଦତଳେ ସେ ଆତ୍ମବିଭୋର ହୋଇ ଲୋଟିଯିବ ।" ଫ୍ରାନ୍ଜ୍ କାଫ୍କାଙ୍କ ଏଇ ଉକ୍ତିଟି ସମ୍ପର୍କରେ ଅବହିତ ହେବା ପରେ ଆମେ କଳାତ୍ମକ ପରିପ୍ରକାଶ ସମ୍ପର୍କରେ ଅଧିକ ପ୍ରଶ୍ନ କରିବାର ଅବକାଶ ରହିବ ନାହିଁ ।

ଏ ସବୁର ଆରମ୍ଭ କେବଳ ନିକଟରେ ପ୍ରଦର୍ଶିତ ହୋଇଥିବା ବିବଦମାନ ଚଳଚ୍ଚିତ୍ର 'ଫାୟାର୍' ଯୋଗୁ ହିଁ ହୋଇଛି । ଚଳଚ୍ଚିତ୍ରଟିର କଥାବସ୍ତୁ ଓ କିଛି କାମୋଦ୍ଦୀପକ ଦୃଶ୍ୟର ଅବତାରଣା ହିଁ ଏହି ଚଳଚ୍ଚିତ୍ରର କଳାତ୍ମକ ଦିଗ ସମ୍ପର୍କରେ ଆଲୋକପାତ କରିବା ପରିବର୍ତ୍ତେ ଅଧିକ ଜଟିଳ ସ୍ତରକୁ ନେଇଯାଇଛି ।

ଏହି କଳାକୃତିର ସାମଗ୍ରିକ ଆବେଦନକୁ ଉପେକ୍ଷା କରି କିଛି ଲୋକ ରାଜନୈତିକ ରୂପ ଦେବାକୁ ଚେଷ୍ଟା କରିଛନ୍ତି । କଳା ଇତିହାସରେ ଏହା ନିଶ୍ଚୟ ଦୁର୍ଭାଗ୍ୟଜନକ । ତେବେ ଏଇ ଚଳଚ୍ଚିତ୍ର ସହ ସଂଶ୍ଳିଷ୍ଟ କେତୋଟି ପ୍ରଶ୍ନକୁ ଆମେ ଏଡ଼ାଇ ଯାଇପାରିବା ନାହିଁ । ସେଥିମଧ୍ୟରୁ ପ୍ରଥମଟି ହେଲାଃ ଏହି ଚଳଚ୍ଚିତ୍ରଟିର ମୁଖ୍ୟ ବକ୍ତବ୍ୟ କ'ଣ ? ଅର୍ଥାତ, ଦର୍ଶକଟି ଘରକୁ ବାହୁଡ଼ି ଯିବାବେଳେ ତା' ମନରେ ଅସମାହିତ ପ୍ରଶ୍ନ ରହିଚିକି ? ସ୍ୱାମୀ-ନିର୍ଯାତିତା ଦୁଇଜଣ ନାରୀଙ୍କର ପରସ୍ପର ପ୍ରତି ମାନସିକ ଓ ଶାରୀରିକ ଆକର୍ଷଣ ହିଁ ଏହାର କଥାବସ୍ତୁ । ଏପ୍ରକାର କଠୋର ସତ୍ୟକୁ ଗ୍ରହଣ କରିବାର ସାହସ ନାହିଁ; ଅଥବା ଏହାକୁ ଗ୍ରହଣ କରିବାର ଆବଶ୍ୟକତାକୁ ଭାରତୀୟ ମାନସିକତା ଏପାବତ୍ ଗ୍ରହଣ କରିପାରିନି । ଏଇ ଚଳଚ୍ଚିତ୍ରର ନିର୍ଦ୍ଦେଶିକା ୟୁରୋପିଆନ୍ ଜୀବନଶୈଳୀରେ ଅଭ୍ୟସ୍ତ ହୋଇଥିବା ହେତୁ ତାଙ୍କ ଚଳଚ୍ଚିତ୍ର ୟୁରୋପିଆନ୍ ବଜାରକୁ ଆଖି ଆଗରେ ରଖି ନିର୍ମାଣ କରାଯାଇଛି ବୋଲି ଅଭିଯୋଗ ମଧ୍ୟ ହେଉଛି । ତେବେ ଏ ସବୁକୁ ବାଦ୍ ଦେଇ ଚଳଚ୍ଚିତ୍ରଟିର କଳାତ୍ମକ ଦିଗଟି ପ୍ରତି ଆଲୋକପାତ କରାଯାଇପାରିବ ବୋଲି ଏ ଲେଖକ ମନେକରେ ।

ସୃଜନୀ ପ୍ରକ୍ରିୟାକୁ ଏକ ଘଟଣା ବୋଲି ଧରିନେବାକୁ ହେବ, ଏହା ଆପଣା ଛାଏଁ ଘଟିଥାଏ ଠିକ୍ ଚେନାଏ ହସ ଅଥବା ବୁନ୍ଦାଏ ଲୁହ ପରି । ସୃଜନୀ ପ୍ରକ୍ରିୟାର ଏକ ନିର୍ଦ୍ଦିଷ୍ଟ ମୁହୂର୍ତ୍ତ ବୋଲି କିଛିନାହିଁ । ପ୍ରକୃତରେ କହିବାକୁ ଗଲେ ପ୍ରକୃତିର ପେଡ଼ିରେ ଏସବୁ ସାଇତା ହୋଇରହିଚି, ସାପପରି । କେହି କେହି ଏହାକୁ ପେଡ଼ିରୁ କାଢ଼ିବା ପାଇଁ ଗଳଦ୍‌ଘର୍ମ ଚେଷ୍ଟା କରିବାବେଳେ ଅଭିଜ୍ଞ ସାପୁଆ କେଳାଟି ଅକ୍ଳେଶରେ ଏହାକୁ ସବୁରି ସାମ୍ନାରେ ଥୋଇଦିଏ । ତେବେ ସାପଟି କାଢ଼ିବାବେଳେ ସାଧାରଣ

ଲୋକ ଅଥବା ସାପୁଆ କେଳା ଉଭୟେ ସଚେତନ ରହିବା ନିତାନ୍ତ ଦରକାର । ଆରିଷ୍ଟୋଟ୍‌ଲ୍‌ଙ୍କ ମତରେ ମଣିଷ ଏକ ଅନୁକରଣପ୍ରିୟ ପ୍ରାଣୀ । ସୃଜନୀ ପାଇଁ ମଣିଷ ତା'ର କଳ୍ପନାଶକ୍ତିର ଯଥେଷ୍ଟ ବ୍ୟାୟାମ କରିଥାଏ । ମାତ୍ର ସବୁ କଳ୍ପନା ସୃଜନ କଳାର ସହାୟକ ନୁହେଁ । ଧରନ୍ତୁ, ଦିବା ସ୍ୱପ୍ନ । ଏହା କୌଣସି ସତ୍ୟଠାରୁ ଦୂରେଇ ଯିବାର ଗ୍ୱେରାବାଟଟିଏ ମାତ୍ର । କାରଣ କଳା ଓ ସତ୍ୟ ଗୋଟିଏ ମୁଦ୍ରାର ଦୁଇ ପାର୍ଶ୍ୱପରି । କଳାର ଦିଗ୍‌ବଳୟ ସୁଦୂରପ୍ରସାରୀ । ଏହାର ଅନ୍ୱେଷଣ ପଛରେ ଲୁଚିରହିଥାଏ ବାସ୍ତବତାର ବତୀଘର । ଗୋଟିଏ ଘରଚଟିଆ ଅଥବା ଗୋଟିଏ ଛଞ୍ଚାଣ ଆକାଶକୁ ଡେଣା ମେଲାଇ ଉଡ଼ି ଯାଉଥିବାର ଦୃଶ୍ୟ ବିଭିନ୍ନ ମଣିଷପାଇଁ ବିଭିନ୍ନ ଆବେଦନ ଓ କଳ୍ପନା ପରଷିଦିଏ । କୋଇଲିର କୁହୁକୁହୁ ଅଥବା ଝରଣାର କୁଳୁକୁଳୁରୁ ଜଣେ କଳାକାର କିଛି ହୁଏତ ଗ୍ୱେରାଇ ନେଇପାରେ । ପୂରା ନୁହେଁ; ତାହା ହିଁ ବିଡ଼ମ୍ବନା ।

କିଛି କଳାକାର ଅଛନ୍ତି ଯେଉଁମାନେ ନିର୍ଦ୍ଦିଷ୍ଟ ଗୋଟିଏ ଲକ୍ଷ୍ୟ ପୂରଣ ପାଇଁ ଚେଷ୍ଟିତ ଥା'ନ୍ତି । ମାତ୍ର ଏବେ ଏଇ ପ୍ରକ୍ରିୟାଟି ସାମ୍ବାଦିକମାନଙ୍କର ଏକାନ୍ତ ନିଜସ୍ୱ ହୋଇଗଲା ପରି ଲାଗୁଛି । ଉଦାହରଣ ସ୍ୱରୂପ, ଅଷ୍ଟାଦଶ ଶତାବ୍ଦୀରେ ସ୍ପେନ୍‌ର କଳାକାର ଗୋୟା(Goya)ଙ୍କ କଥା ନିଆଯାଇପାରେ । ସେ ତାଙ୍କ କଳାକୃତିରେ ଅମାନବିକତା ବିରୁଦ୍ଧରେ ଚମତ୍କାର ସଂଗ୍ରାମ ଚଳାଇଥିଲେ । ମାତ୍ର, ଆଜିର ସମୟରେ ସେସବୁ ଯେ ନିରର୍ଥକ ଖାଲି ତାହା ନୁହେଁ; ଅନାବଶ୍ୟକ ମଧ୍ୟ । କାରଣ ଅମାନବିକତା ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରିବା ଲାଗି ଆମ ଖବରକାଗଜଗୁଡ଼ିକ ଏବେ ସମର୍ଥ ହୋଇସାରିଛନ୍ତି । କଳାକାରର ଦାୟିତ୍ୱ ଏବେ ବଢ଼ିଯାଇଛି, ଅନ୍ୟବାଟରେ ।

ଯଦି ଜଣେ କଳାକାରଙ୍କୁ ସେ ''କାହିଁକି ଏଇ 'ନିଶା'ରେ ମାତିଛି'' ବୋଲି ପ୍ରଶ୍ନ କରାଯିବ; ତେବେ ତା'ର ସିଧାସଳଖ ଉତ୍ତର ହେବ: ''ନିଶା କୁହ କି ଯାହା କୁହ, ଏଇଆ କରୁଛି ବୋଲି ମୁଁ ବଞ୍ଚିଛି ।'' କଥାଟା ପୂରା ସତ । ଜଣେ କବି, ଚିତ୍ରକର ଅଥବା ସଂଗୀତଜ୍ଞ ଯାହା କରୁଛି ତା'ଛଡ଼ା ଅଧିକ କିଛି କରିବା ତା' ଦ୍ୱାରା ସମ୍ଭବ ହେଇପାରୁନି । ତା'ର ଅକ୍ଷମତାବୋଧର ଏହା ହେଉଛି ପରିପ୍ରକାଶ ମାତ୍ର ।

କଳାକାର ସମ୍ପର୍କରେ ଆମେରିକୀୟ ଲେଖକ କୁର୍ଟ୍ ଭୋନ୍ନେଗୁଙ୍କ (Kurt Vonnegot) ମତ ଟିକେ ଭିନ୍ନ ଧରଣର: ''କୋଇଲା ଖଣି ଭିତରକୁ ଯିବା ପୂର୍ବରୁ ଶ୍ରମିକମାନେ ପ୍ରଥମେ ଗୋଟିଏ ହଳଦୀବସନ୍ତ ପକ୍ଷୀ ପିଞ୍ଜରାବଦ୍ଧ କରି ରଜ୍ଜୁ ସାହାଯ୍ୟରେ ଖଣି ତଳକୁ ଛାଡ଼ନ୍ତି । ପୁଣି ରଜ୍ଜୁ ଦ୍ୱାରା ଉକ୍ତ ପଞ୍ଜୁରୀଟିକୁ ଟାଣି ଉପରକୁ ଆଣିବାପରେ ଯଦି ହଳଦୀବସନ୍ତ ପକ୍ଷୀଟି ମରିଯାଇଥିବା ଦେଖାଯାଏ, ତେବେ ଖଣି ଭିତରକୁ ଯିବା ନିରାପଦ ନୁହେଁ ବୋଲି ବୁଝିବାକୁ ହେବ । ସମାଜରୂପୀ କୋଇଲା-ଖଣିରେ କଳାକାରଟି ହେଉଚି ହଳଦୀବସନ୍ତ; ଯାହାର ସ୍ୱରରୁ ଆମେ ସମାଜର ନିରାପତ୍ତା ସମ୍ପର୍କରେ ସୂଚନା ପାଇପାରିବା ।'' କଳାକାରକୁ ତା' ବାଟରେ ଛାଡ଼ି ଦିଆଯାଉ ।



# ପୁନଶ୍ଚ ପିଆନୋ

କିଛିଦିନ ତଳେ ଶିକ୍ଷାମନ୍ତ୍ରୀଙ୍କ ଅଗ୍ରନକ ମହାବିଦ୍ୟାଳୟ ପରିଦର୍ଶନ ଓ ସେଠାରେ ବିନା ଦରଖାସ୍ତରେ ଅନୁପସ୍ଥିତ ରହୁଥିବା ଅଧ୍ୟାପକମାନଙ୍କୁ କାର୍ଯ୍ୟରୁ ନିଲମ୍ବିତ କରିବା ଘଟଣା ଖବରକାଗଜ-ମାନଙ୍କରେ ବିସ୍ତୃତ ଭାବେ ପ୍ରକାଶ ପାଇଛି । ଏହି ଘଟଣା ଶିକ୍ଷାନୁଷ୍ଠାନମାନଙ୍କରେ ଆତଙ୍କ ସୃଷ୍ଟିକରିଛି ବୋଲି ପ୍ରଗ୍ୱର ମଧ୍ୟ ହେଉଛି । ସବୁଠାରୁ ଚିନ୍ତା ଓ ଲଜ୍ଜାର କଥା ହେଉଛି ଏସବୁ ଘଟିଛି ଆମ ରାଜଧାନୀରେ ଥିବା ମହାବିଦ୍ୟାଳୟରେ । ଅନ୍ତତଃ ଅନ୍ୟ କୌଣସି ସ୍ଥାନ ଅପେକ୍ଷା ରାଜ୍ୟର ରାଜଧାନୀରେ ଏ ପ୍ରକାର କାର୍ଯ୍ୟ ହେଉ ନଥିବ ଏବଂ ଶିକ୍ଷା ପ୍ରଶାସନ ସୁଗ୍ୱରୁରୂପେ ତା'ର କାର୍ଯ୍ୟ ଚଳାଉଥିବ ବୋଲି ଆଶା କରିବା କଥା । ମାତ୍ର ଆଶା ଗରିବ ଲୋକଙ୍କର ରୋଟି ସଦୃଶ । ଏହାଛଡ଼ା ଶିକ୍ଷକମାନଙ୍କର ଛାତ୍ରମାନଙ୍କୁ ଘରୋଇ ଟିଉଶନ୍ କରିବା

ଏକପ୍ରକାର ପରମ୍ପରାରେ ପରିଣତ ହେବାକୁ ବସିବା ଏବଂ ଏହାଦ୍ୱାରା ଶିକ୍ଷାର ଗୁଣାତ୍ମକ ମାନ ହ୍ରାସ ପାଇବା କଥା ଗ୍ଭରିଆଡ଼େ ଆଲୋଚିତ ହେଉଛି ।

ଏଥିନେଇ ବୁଦ୍ଧିଜୀବୀ ମହଲରେ ନାନା କଥା ଶୁଣିବାକୁ ମିଳୁଛି । କେତେକଙ୍କ ମତରେ, ପ୍ରଶାସନର ସର୍ବୋଚ୍ଚ କର୍ତ୍ତାମାନେ ବାସ କରୁଥିବା ଭୁବନେଶ୍ୱର ସହରରେ ଯଦି ଅଧ୍ୟାପକମାନେ ନିର୍ଭୟରେ ଘରେ ରହି ଦରଖାସ୍ତ ଦେବାକୁ ଆବଶ୍ୟକ ମନେକରନ୍ତି ନାହିଁ, ତେବେ ଓଡ଼ିଶାର ଉପାନ୍ତ ଅଞ୍ଚଳ ତଥା ଆଦିବାସୀ ଜିଲ୍ଲାମାନଙ୍କରେ ଶିକ୍ଷକମାନେ ମାସ-ମାସ ଧରି ସ୍କୁଲକୁ ନଯିବାରେ କି ବୈଚିତ୍ର୍ୟ ଅଛି ? ଏହାଛଡ଼ା ଟିଉଶନ୍‌କୁ ଏକ ମାନସିକ ବେଶ୍ୟାବୃତ୍ତି (Mental prostitution) ବୋଲି କୁହାଯାଉଥିଲେ ବି, ରାଜ୍ୟସାରା ଛତୁ ଫୁଟିବା ପରି ମହାବିଦ୍ୟାଳୟ-ମାନଙ୍କରେ ନିଯୁକ୍ତି ପାଇଥିବା ଅଧ୍ୟାପକ ବା ଅଧ୍ୟାପିକାମାନଙ୍କ ସ୍ୱଳ୍ପ ବେତନ ଅଥବା ଅବୈତନିକ ଅବସ୍ଥା ଏଇ ଟିଉଶନ୍ ପରମ୍ପରା ପାଇଁ ମୂଳତଃ ଦାୟୀ ।

କେବଳ ଶିକ୍ଷାନୁଷ୍ଠାନ ଖୋଲିଦେଲେ ଶିକ୍ଷାର ଗୁଣାତ୍ମକ ବିକାଶ ହୁଏ ନାହିଁ । ଅବଶ୍ୟ ଜ୍ଞାନକୁ ଶକ୍ତି ରୂପେ ଆମେ ଅନେକ କାଳରୁ ବିବେଚନା କରିଆସିଛୁ । ଜେ.ଏମ୍.କ୍ଲାର୍କ୍‌ଙ୍କ ମତରେ ଜ୍ଞାନ ହେଉଛି ଏକମାତ୍ର ଉପାର୍ଜିତ ବସ୍ତୁ, ଯାହା ପୁରୁଣା ହେଲେ ବି ତା'ର ମୂଲ୍ୟ କମିଯାଏ ନାହିଁ । (Knowledge is the only instrument of production that is not subject to diminishing returns) ମାତ୍ର ଭାରତର ସାମ୍ପ୍ରତିକ ଶିକ୍ଷାପଦ୍ଧତି ଏଇ ଜ୍ଞାନ ବିତରଣ କରିବାରେ କେତେଦୂର ସଫଳ ହୋଇଛି ତାହା ବିଗ୍ଭର କରିବାର ସମୟ ଆସିଛି ।

ଜ୍ଞାନ ଅର୍ଜନ ବିଜ୍ଞଜନଙ୍କର ଲକ୍ଷ୍ୟ ହୋଇଥିବାରୁ ତାହା ସେମାନେ କେତେଦୂର ସହଜରେ ପାଇପାରୁଛନ୍ତି ଭାବିଲେ ହତାଶ ହେବାକୁ ପଡ଼େ।

ପ୍ରାୟ ଶହେପଞ୍ଚଷଠି ବର୍ଷ ତଳେ (୧୮୩୫) ମାକ୍‌କୁଲେ ଯେଉଁ ଶିକ୍ଷାପଦ୍ଧତିର ଖସଡ଼ା (Minute on Education) ପ୍ରସ୍ତୁତ କରିଥିଲେ ସେଥିରେ ସାଧାରଣ ଜନତାର ଶିକ୍ଷା ନେଇ ଆଦୌ କୌଣସି ଯୋଜନା ନଥିଲା। ଶାସକ ଇଙ୍ଗ୍‌ରେଜ୍ ଓ ଶାସିତ ଭାରତୀୟଙ୍କ ମଧ୍ୟରେ ଯୋଗସୂତ୍ର ରଖିବା ପାଇଁ କିଛି ମଧ୍ୟ ସ୍ଥିର ଆବଶ୍ୟକତାକୁ ଆଖି ଆଗରେ ରଖି ଏଇ ଶିକ୍ଷା ବ୍ୟବସ୍ଥାର ପ୍ରଚଳନ ହୋଇଥିଲା। ଏହା ଫଳରେ ଅଧିକାଂଶ 'ରାୟ୍‌ବାହାଦୂର୍' ହିଁ ଜନ୍ମନେଲେ। ଏମାନେ ଜ୍ଞାନର ବର୍ତ୍ତିକା ନଥିଲେ। ବରଂ ଏମାନଙ୍କ ତୋଷାମଦ ଘୃଣା ହିଁ ପରଷିବାରେ ସାହାଯ୍ୟ କଲା। ଏଇ କାରଣରୁ, ଗଣଶିକ୍ଷାର ମୃତ୍ୟୁ ଓ ଜଣଶିକ୍ଷାର ଜନ୍ମହେଲା।

ସମୟାନୁକ୍ରମେ ସ୍ୱାଧୀନ ଭାରତର ସମ୍ବିଧାନ କିନ୍ତୁ ଏହାର ନିରବଦ୍ରଷ୍ଟା ହେଇ ରହିପାରିଲା ନାହିଁ। ସାର୍ବଜନିକ ଓ ମାଗଣା ଶିକ୍ଷା ବ୍ୟବସ୍ଥା ପାଇଁ ସମ୍ବିଧାନରେ ଉଲ୍ଲେଖ କରାଯିବାର ପାଞ୍ଚ ଦଶନ୍ଧି ପରେ ବି ଆମେ ଲକ୍ଷ୍ୟ ଚରିତାର୍ଥ କରିବାରେ ବିଫଳ ହୋଇଛୁ। ଘଟଣା ଏପରି ସ୍ତରକୁ ଗଲାଣି ଯେ ଏ ବର୍ଷର ନୋବେଲ୍ ପୁରସ୍କାର ବିଜେତା ତଥା ବିଶିଷ୍ଟ ଅର୍ଥନୀତିଜ୍ଞ ଅମର୍ତ୍ତ୍ୟ ସେନ୍ ତାଙ୍କର ପୁରସ୍କାରଲବ୍ଧ ସମସ୍ତ ଅର୍ଥକୁ ଏକ ଟ୍ରଷ୍ଟ ଜରିଆରେ ଭାରତ ଓ ବାଙ୍ଗ୍‌ଲାଦେଶର ମୌଳିକ ଶିକ୍ଷା ପାଇଁ ଖର୍ଚ୍ଚ କରିବାକୁ ନିଷ୍ପତ୍ତି ନେଇଛନ୍ତି। ତଥାପି ସରକାରଙ୍କ କୁମ୍ଭକର୍ଣ୍ଣ ନିଦ ଭାଙ୍ଗିଛି ବୋଲି ବିଶ୍ୱାସ କରି ହେଉନି। ନ୍ୟାଶନାଲ୍ ଇନ୍‌ସ୍‌ଟିଚ୍ୟୁଟ୍ ଅଫ୍ ପର୍ସୋନେଲ୍ ମ୍ୟାନେଜ୍‌ମେଣ୍ଟର ଉତ୍କଳ ଶାଖା ତରଫରୁ ପ୍ରକାଶିତ 'ପର୍ସୋନେଲ୍ ଫୋକସ୍'ର ନଭେମ୍ବର୍/ଡିସେମ୍ବର୍

୧୯୯୮ ସଂଖ୍ୟାର ସମ୍ପାଦକୀୟ ସ୍ତମ୍ଭରେ ଉଲ୍ଲେଖ କରାଯାଇଛି ଯେ ସମ୍ପ୍ରତି ଭାରତର ସାତକୋଟି ପଚାଶ ଲକ୍ଷ ଶିଶୁମାନଙ୍କ ଭିତରୁ ପ୍ରାୟ ପାଞ୍ଚ କୋଟି ଚାରିଲକ୍ଷ ଝିଅପିଲା ଅଛନ୍ତି; ଯେଉଁମାନେ ସ୍କୁଲ୍‌କୁ ଯାଆନ୍ତି ନାହିଁ। ପରିସଂଖ୍ୟାନରୁ ଜଣାପଡ଼େ, ଭାରତରେ ଯେପରି ଭାବେ ଜନସଂଖ୍ୟା ବିସ୍ଫୋରଣ ଘଟୁଛି ତା' ତୁଳନାରେ ପ୍ରତିଦିନ ହାରାହାରି ଅନ୍ତତଃ ଗୋଟିଏ ସ୍କୁଲ୍ ପ୍ରତିଷ୍ଠା ହେବା ଦରକାର ଏବଂ ଏଇ ପ୍ରକ୍ରିୟା ଆଗାମୀ ଦଶବର୍ଷ ପାଇଁ ଚାଲୁ ରହିଲେ ଆମେ ମୌଳିକ ଶିକ୍ଷା ଭଳି ସମସ୍ୟାଟିକୁ ଆୟତ୍ତ କରିପାରିବା। ପ୍ରସିଦ୍ଧ ଅର୍ଥନୀତିଜ୍ଞ ଡଃ ମେହ୍‌ବୁବ୍-ଉଲ୍-ହକ୍‌ଙ୍କ ଭାଷାରେ ଯଦି ଆମେ ଲୋକଙ୍କ ପାଇଁ ଅର୍ଥ ବିନିଯୋଗ କରିବାର କଳ୍ପନାଟିଏ କରିପାରିବା ତେବେ ଆମେ ଦକ୍ଷିଣ ଏସିଆ ମହାଦେଶର ଅର୍ଥନୈତିକ ଓ ରାଜନୈତିକ ଭାଗ୍ୟରେ ଆମୂଳଚୂଳ ପରିବର୍ତ୍ତନ ଆଣିପାରିବା; କାରଣ ଲୋକଙ୍କ ପାଇଁ ବିନିଯୋଗ କରିବା ହିଁ ଉପଯୁକ୍ତ ବିନିଯୋଗ (We can completely change the economic and political destiny of South-Asia, if we show the imagination to invest in the people. Investment in people is the best investment we can make)

ତାଙ୍କ ବକ୍ତବ୍ୟକୁ ପୁଷ୍ଟି କରିବା ପାଇଁ ଡକ୍ଟର୍ ହକ୍ ଯେଉଁ ହିସାବଟି ଦିଅନ୍ତି ତାହା ଅତ୍ୟନ୍ତ ନିରାଶାଜନକ। ଜାତୀୟ ଆୟର ମାତ୍ର ଚାରିଶତାଂଶ ଆମର ସମସ୍ତ ଶିକ୍ଷା ପାଇଁ ଖର୍ଚ୍ଚ ହୁଏ; ଯେଉଁଥିରୁ ମୌଳିକ ଶିକ୍ଷା ପାଇଁ ଦୁଇଶତାଂଶରୁ କମ୍ ଖର୍ଚ୍ଚ କରାଯାଇଥାଏ। ଡକ୍ଟର୍ ହକ୍‌ଙ୍କ ହିସାବ ଅନୁଯାୟୀ ୧୯୯୦ରୁ ୧୯୯୬ ଭିତରେ ଆମେ ସାତହଜାରକୋଟି ଡଲାର୍ ଖର୍ଚ୍ଚ କରିବାପାଇଁ ପ୍ରତିଶ୍ରୁତି ଦେଇ ମାତ୍ର ବାରଶହ କୋଟି ଡଲାର୍ ଖର୍ଚ୍ଚ କରିଛୁ। ଆଗାମୀ ଅଲାମ୍ପିକ୍ ଖେଳରେ

ରାଷ୍ଟ୍ରମୁଖ୍ୟମାନଙ୍କର ପ୍ରତିଶ୍ରୁତି ଦେବା ପ୍ରତିଯୋଗିତାଟିଏ ସଂଘଟିତ କରାଗଲେ ଭାରତ ଯେ ନିର୍ବିବାଦରେ ସ୍ୱର୍ଣ୍ଣପଦକଟିଏ ହାସଲ କରିପାରନ୍ତା, ଏଥିରେ ଦ୍ୱିମତ କେହି ହେବେ ନାହିଁ।

କିଛି ମହାବିଦ୍ୟାଳୟକୁ ଅଗ୍ରନକ ଗସ୍ତ କରି ଶିକ୍ଷାମନ୍ତ୍ରୀ ମହୋଦୟ ସ୍ୱଳ୍ପକାଳ ପାଇଁ ଉକ୍ତ ଶିକ୍ଷକମାନଙ୍କ ମନରେ ଭୟ ସଞ୍ଚାର କରିପାରନ୍ତି; ମାତ୍ର ସେ ଭୟରୁ କିଛି ସୁଫଳ ମିଳିବ ବୋଲି ଆଶା କରିବା ବୃଥା ହେବ। ଉକ୍ତ ଭୟରୁ ମୁକୁଳିବା ପାଇଁ ଅନେକ ରାସ୍ତା ମଧ୍ୟ ତିଆରି ହୋଇଯିବ।

ଏକଥା କହିବାବେଳେ ନିକଟରେ ଗୋଟିଏ ରାଜନୈତିକ ଦଳର ସଭା କଥା ମନେପଡୁଛି। ସଭାରେ ଉପସ୍ଥିତ ସମସ୍ତ ସଭ୍ୟ ଦଳର ମୁଖ୍ୟଙ୍କ ସ୍ତୁତିଗାନ କରିବା ଫଳରେ ଜଣେ ପ୍ରଗତିଶୀଳ ସଭ୍ୟ ଉତ୍‌କ୍ଷିପ୍ତ ହୋଇ ତାଙ୍କ ଭାଷଣରେ କହିଲେ ଏଯାବତ୍ ସବୁ ମାନ୍ୟବର ସଭ୍ୟମାନେ ଦଳର ମୁଖ୍ୟଙ୍କ ସ୍ତୁତିଗାନ କରିଛନ୍ତି। ଅତୀତରେ ମଧ୍ୟ ଏମାନେ ତତ୍କାଳୀନ ମୁଖ୍ୟଙ୍କ ସ୍ତୁତିଗାନ କରୁଥିଲେ। ଏଥିରୁ ଗୋଟିଏ କଥା ସ୍ପଷ୍ଟ ହେଇଯାଉଛି ଯେ, ଆମେ କେବଳ ପିଆନୋଟିକୁ ବଦଳେଇ ଗ୍ଲିଛୁ। ଆମେ ପିଆନୋ ବଦଳାଇବା ପରିବର୍ତ୍ତେ ତା'ର ସ୍ୱର ସଂଯୋଜନାରେ ପରିବର୍ତ୍ତନ ଆଣିବାକୁ ପଡ଼ିବ। ତା' ନ ହେଲେ ବିଚରା ଶ୍ରୋତାଟି କେତେଦିନ ସେଇ ଗୋଟାଏ ସ୍ୱର ସଂଯୋଜନାକୁ ଶୁଣୁଥିବ ?

ଏବେ ପିଆନୋ ନୁହେଁ, ସ୍ୱର ବଦଳେଇବାର ସମୟ ଆସିଛି।



# ମନୋହରପୁରରେ ହୋ' ହଲ୍ଲା

ସମ୍ପଥ୍ ଗୃଓଲା ଜଣେ କିରାଣୀ ଭାବେ ଡାକ ବିଭାଗରେ ଗ୍ଚାକିରୀ କରିବା ପରେ ଏକଦା ନିଜ ଉପରିସ୍ଥ ହାକିମଙ୍କ କନ୍ୟାର ବିବାହ ଉତ୍ସବରେ ଘଟାଇଥିବା ବିଭତ୍ସ କାଣ୍ଡ ପରେ ଗୋଟିଏ ପିଜୁଳି ବଗିଚ୍ଚାକୁ ଯାଇ, ଗଛ ଉପରେ ତା'ର ଜୀବନ ବିତାଇଛି । ପରବର୍ତ୍ତୀ ସମୟରେ ଏଇ କୌତୁହଳ ପରିବେଶଟିକୁ ଉପଭୋଗ କରିବା ଲାଗି ଶହଶହ ଲୋକଙ୍କ ଭିଡ଼ ଜମିବା ସଙ୍ଗେସଙ୍ଗେ ଯେଉଁ ଅସ୍ୱାଭାବିକ ପରିବେଶ ସୃଷ୍ଟି ହୋଇଛି– ତା'ର ସବିଶେଷ ବର୍ଣ୍ଣନା ରହିଛି ପ୍ରଖ୍ୟାତ ଔପନ୍ୟାସିକା କିରଣ ଦେଶାଇଙ୍କ 'ହଲ୍ଲାବାଲୁ ଇନ୍ ଗ୍ୱାଭା ଅର୍ଚ୍ଚାର୍ଡ୍' (Hullabaloo in Guava Orchard) ବହିରେ । ବହିଟି ଭାରତ ଓ ବିଦେଶରେ ଖୁବ୍ ଚହଳ ସୃଷ୍ଟି କରିଥିଲା ଗତବର୍ଷ ।

ଠିକ୍ ଅନୁରୂପ ଭାବେ ଗୋଟାଏ ହୋ' ହଲ୍ଲା ପରିବେଶ ସୃଷ୍ଟି ହୋଇଛି ଏବେ ମନୋହରପୁରରେ । ଓଡ଼ିଶାର ଏକ ଅବହେଳିତ ଜିଲ୍ଲା କେନ୍ଦୁଝରର ଏକ ଅଖ୍ୟାତ ଗ୍ରାମ ହଠାତ୍ ସାରା ଦେଶରେ ଚହଳ ସୃଷ୍ଟି କରିଛି । ପ୍ରାୟ ଚଉତ୍ରିଶ ବର୍ଷ କାଳ ଭାରତକୁ ନିଜର କର୍ମସ୍ଥଳୀ ଭାବେ ଗ୍ରହଣ କରିଥିବା, ବାରିପଦାର କୁଷ୍ଠରୋଗୀଙ୍କୁ ସମ୍ମାନର ସହ ସେବା କରୁଥିବା ଗ୍ରାହାମ୍ ଷ୍ଟୁଓ୍ୱାର୍ଟ ଷ୍ଟେନ୍ସ୍ ଓ ତାଙ୍କର ଦୁଇ କୋମଳମତି ଶିଶୁପୁତ୍ରଙ୍କୁ ଜୀଅଁନ୍ତା ପୋଡ଼ି ମାରିଦେବା ଘଟଣା ପାଇଁ ସାରା ଦେଶରେ ହଇଚଇ ସୃଷ୍ଟି ହୋଇଛି । ସ୍ୱାଧୀନତାର ପଚାଶ ବର୍ଷରୁ ଉର୍ଦ୍ଧ୍ୱକାଳ ବିତିଯାଇଥିଲେ ସୁଦ୍ଧା ମନୋହରପୁର ଗାଁକୁ ଖଣ୍ଡିଏ ରାସ୍ତା ନାହିଁ କିମ୍ବା ବିଦ୍ୟୁତ୍‌କରଣ ହୋଇନାହିଁ ବୋଲି ଖବରକାଗଜ ପୃଷ୍ଠାମାନଙ୍କରୁ ଆମେ ପଢୁଛୁ, ମାତ୍ର ସେଇ ଅନାମଧେୟ ଗାଁଟି ରାଜ୍ୟ ଓ ଦେଶର ବରିଷ୍ଠ ରାଜନୈତିକ ଓ ଅମଲା ଅଧିକାରୀଙ୍କ ପାଇଁ ଗୋଟାଏ ତୀର୍ଥସ୍ଥଳୀ ହୋଇଯାଇଛି ଏବେ । ୰ଷ୍ଟେନ୍ସ୍ କେବଳ ଓଡ଼ିଶାକୁ ତାଙ୍କ ପ୍ରିୟ କର୍ମଭୂମି ଭାବେ ବାଛି ନଥିଲେ, ବାରିପଦାର ସାନ୍ତାଳୀ ଭାଷାରେ କବିତାମାନ ରଚନା କରି ସେଠାକାର ଆକାଶବାଣୀ କେନ୍ଦ୍ରରେ ପ୍ରସାରିତ କରିଥିଲେ । ଆଦିବାସୀମାନଙ୍କ ସହ ନିଜକୁ ଏକାକାର କରି ଖୁବ୍ ଲୋକପ୍ରିୟ ହୋଇଯାଇଥିଲେ ସେ । ଶ୍ରୀମତୀ ଷ୍ଟେନ୍ସ୍‌ଙ୍କ ସ୍ୱଚ୍ଛ ଓଡ଼ିଆ ଭାଷାରେ କଥା କହିବା କ୍ଷମତାକୁ ଖୁବ୍ ପ୍ରଶଂସା କରୁଥିଲେ ଜଣେ ଅନ୍ତରଙ୍ଗ ବନ୍ଧୁ, ଯେ' କି ନିଜ ଭଉଣୀର ବିବାହୋତ୍ସବରେ ଶ୍ରୀମତୀ ଷ୍ଟେନ୍ସ୍‌ଙ୍କୁ ଭେଟିଥିଲେ ବାରିପଦାରେ ଗତବର୍ଷ ।

ସୁଦୂର ଅଷ୍ଟ୍ରେଲିଆରୁ ଆସି ସେ କୁଷ୍ଠରୋଗୀଙ୍କର ଯେଭଳି ସେବା କରିପାରୁଛନ୍ତି, ଅହିଂସା ଓ ସତ୍ୟପଥକୁ ସମ୍ମାନ ଜଣାଉଥିବା

ସବୁ ଭାରତୀୟଙ୍କ ପାଇଁ ଏହା ଏକ ଆହ୍ୱାନ ନିଶ୍ଚୟ । ସେଇଥିପାଇଁ ଏବେ ପ୍ରଖ୍ୟାତ ଚିତ୍ରଶିଳ୍ପୀ ମନ୍‌ଜିତ୍ ବାୱା କହିଛନ୍ତି: ଭାରତରେ ରହୁଥିବା ଖ୍ରୀଷ୍ଟ ଧର୍ମାବଲମ୍ବୀମାନେ ହେଉଛନ୍ତି ସବୁଠାରୁ ଉଦାର ଆତ୍ମା ଏବଂ ସେମାନେ ଯଦି ଅନଗ୍ରସର ଆଦିବାସୀଙ୍କୁ ଶିକ୍ଷା ଓ ଖାଇବାକୁ ଦେଉଥା'ନ୍ତି, ସରକାର ତାଙ୍କ ପ୍ରତି କୃତଜ୍ଞ ରହିବା ଉଚିତ୍ । (Christians in india are the most gentle souls and if they are educating and feeding some backward tribals, the government should be grateful for it)

ଶ୍ରୀ ବାୱାଙ୍କ ଉକ୍ତିକୁ ଗୁରୁତ୍ୱର ସହ ବିଚାର କରିବାକୁ ପଡ଼ିବ । ପ୍ରାୟ ଅଠର ବର୍ଷ ତଳେ ୧୯୮୧ରେ ତାମିଲନାଡୁର ମୀନାକ୍ଷିପୁରମ୍‌ରେ ପ୍ରାୟ ଶହେଅଶିଟି ପରିବାରର ଏକହଜାର ବ୍ୟକ୍ତି ଇସ୍‌ଲାମ୍ ଧର୍ମ ଗ୍ରହଣ କରିଥିଲେ । ଏହାପୂର୍ବରୁ ସେମାନେ ଥିଲେ ହିନ୍ଦୁ, ମାତ୍ର ଦଳିତ ହରିଜନ । ସମଗ୍ର ଦେଶରେ ଚହଳ ସୃଷ୍ଟି କରିଥିଲା ଘଟଣାଟି । ମାତ୍ର, ଅନୁସନ୍ଧାନ ପରେ ଜଣାପଡ଼ିଥିଲା ଯେ ସବର୍ଣ୍ଣ ହିନ୍ଦୁମାନଙ୍କର ସେମାନଙ୍କ ପ୍ରତି ହୋଇଥିବା ଅତ୍ୟାଚାର, ଶୋଷଣ ଆଦି ଏଇ ଧର୍ମାନ୍ତର କାହାଣୀର ମୂଳକଥା ।

ମୀନାକ୍ଷିପୁରମ୍ ଓ ମନୋହରପୁର କେବଳ ଯାହା ଅଲଗାଅଲଗା ଦୁଇଟା ଜାଗାର ନାଁ । ମାତ୍ର ଶୋଷଣ ଓ ଅତ୍ୟାଚାର ହିଁ ଦୁଇଟିଯାକ ସ୍ଥାନର ମୁଖ୍ୟ ଘଟଣା । କ'ଣ ପାଇଁ ଜଣେ ତା'ର ଧର୍ମକୁ ବି ବଦଳାଇ ଦିଏ ? ଭୋକ ପାଖରେ 'ଈଶ୍ୱର' ଏକ ଅବାନ୍ତର ପ୍ରଶ୍ନ । ଏକଥା ସେମାନେ ଆମଠୁ ଭଲ ଭାବେ ଜାଣନ୍ତି । ପଚାଶ ବର୍ଷର ପ୍ରତିଶ୍ରୁତି କେବଳ ପ୍ରତାରଣା ଛଡ଼ା ଅନ୍ୟକିଛି ନୁହେଁ । ସେଇଥିପାଇଁ ତ କୁହାଯାଏ– 'ଜଣେ ଗରିବ ପାଖକୁ ଭଗବାନ୍ ରୁଟି ଅବତାର ନେଇ ଆସନ୍ତି ।'

ଅର୍ଥନୈତିକ ଅସାମଞ୍ଜସ୍ୟ ଓ ଜାତିଗତ ଅସମାନତା ହିଁ ଧର୍ମାନ୍ତର ପାଇଁ ମୁଖ୍ୟ କାରଣ ଭାବେ ଠିଆ ହୋଇଛି ।

ଇତିହାସରୁ ମଧ୍ୟ ଏକଥା ଶିଖିବାର ଅଛି ଏଜାତିର । ନ'ଅଙ୍କ ଦୁର୍ଭିକ୍ଷ ବେଳେ ଅନେକ ଲୋକ ଧର୍ମାନ୍ତରକରଣକୁ ସ୍ୱାଗତ କରିଥିଲେ– ନିଜକୁ କେବଳ ବଞ୍ଚାଇବା ପାଇଁ ।

ସବୁଠାରୁ ବିଡ଼ମ୍ବନା ହେଉଛି– ଆମ ଦେଶରେ ଯେଉଁମାନେ ଧର୍ମକୁ ନେଇ ଏତେ ହୋ' ହଲ୍ଲା କରୁଛନ୍ତି, ଧର୍ମର ଅସଲ ଚେହେରାଟିକୁ ଚିହ୍ନିବା ବେଳକୁ ଅନ୍ଧତ୍ୱର ଶିକାର ହେଉଛନ୍ତି ସେମାନେ । ଗ୍ରାହାମ୍ ଷ୍ଟେନ୍‌ସ୍‌ଙ୍କ ମୃତ୍ୟୁର ମାତ୍ର କେତୋଟି ଘଣ୍ଟା ପରେ ତାଙ୍କର ପତ୍ନୀ ଯେଉଁ ମନ୍ତବ୍ୟ ଦେଇଥିଲେ, ତାହା ସମସ୍ତଙ୍କର ପ୍ରଣିଧାନର ବିଷୟ । ସେ କହିଥିଲେ: "ମୋର କାହାରି ପ୍ରତି କୌଣସି ଅଭିଯୋଗ ନାହିଁ । ଭଗବାନ ଗ୍ୱହିଁବାରୁ ମୋର ସ୍ୱାମୀ ଓ ପୁତ୍ରମାନଙ୍କର ଏ ଦଶା ହେଲା; କାରଣ ଭଗବାନ ହିଁ ସବୁରି ଜୀବନକାଳ ନିର୍ଣ୍ଣୟ କରିଥା'ନ୍ତି । ତାଙ୍କ ନିର୍ଣ୍ଣୟ ବିରୁଦ୍ଧରେ ଇଚ୍ଛା କରିବା ପାପ ନିଶ୍ଚୟ ।" କଥାର ମର୍ମଟି ଧ୍ରୁବ ସତ୍ୟ ହେଲେ ବି ଏହାକୁ ଅଙ୍ଗେ ନିଭେଇବା କେତେ କଠିନ ବ୍ୟାପାର ନୁହେଁ ସତେ ! ଯଥାର୍ଥରେ, ଥରେ ରଜ୍‌ନୀଶ୍ କହିଲେ: "ଯଦି ଆମର କୌଣସି ପ୍ରିୟ ଓ ପରିଚିତର ମୃତ୍ୟୁ ହୁଏ, ଏହା ବିଧିର ବିଧାନ ବୋଲି ମୃତବ୍ୟକ୍ତିର ପରିଜନଙ୍କୁ ଆଶ୍ୱାସନା ଦେଇଥାଉ, ମାତ୍ର ଯେତେବେଳେ ଆମ ନିଜର କେହି ପ୍ରିୟ ପରିଜନର ଦେହାନ୍ତ ଘଟେ, ସେଇ ଆଶ୍ୱାସନାବାଣୀଟିକୁ ଆମେ ସେତେବେଳେ ଭୁଲିଯାଇ ଦୁଃଖରେ ମ୍ରିୟମାଣ ହେଉ ।" ମ୍ୟାଡାମ୍ ଷ୍ଟେନ୍‌ସ୍‌ଙ୍କର ଦୁଃଖ ସହିବାର ଶକ୍ତି ନୁହେଁ, ଜୀବନକୁ ଜୀଇଁବାର କୌଶଳ ହିଁ ଆମ ଗୀତା ତଥା ଭାଗବତରେ ଅନେକ ପରିମାଣରେ ମହଜୁଦ୍

ରହିଛି । ଗୀତାର 'ସାଂଖ୍ୟଯୋଗ'ରେ ଆତ୍ମା ଓ ଶରୀରକୁ ନେଇ ଅନେକ ଉଦାହରଣ ଦିଆଯାଇଛି । ମନେହେଉଛି, ମ୍ୟାଡାମ୍ ସ୍ଟେନ୍‌ସ୍ ଆମକୁ ଗୀତାର ସାରମର୍ମ ହିଁ ଶୁଣାଇଛନ୍ତି କେବଳ ।

ଏଥର ନିଜ ଅନୁଭୂତିରୁ କହେଁ । କିଛିବର୍ଷ ତଳେ ବୃତ୍ତିଗତ ତାଡ଼ନାରେ ଯେଉଁ ଅଞ୍ଚଳରେ ଏ ଲେଖକ ରହୁଥିଲା, ସେଠାରେ ଗୋଟିଏ ମିସନାରୀ ହାସପାତାଳ ସହ ଲେଖକର ସମ୍ପର୍କ ଘନିଷ୍ଠ ହୋଇଥିଲା ଦୁଇଟି କାରଣ ଯୋଗୁଁ: ହାସପାତାଳର ପରିଚ୍ଛନ୍ନତା ଓ ସେବା ମନୋଭାବ । ସେଇଥିପାଇଁ ଅନତିଦୂରରେ ଥିବା ସରକାରୀ ହାସପାତାଳଟି ପ୍ରାୟତଃ ରହୁଥିଲା ଜନମାନବଶୂନ୍ୟ । ମନୋହରପୁରର ଘଟଣା ସହିତ ମହାତ୍ମା ଗାନ୍ଧିଙ୍କର ଉକ୍ତିଟି ବି ଏବେ ମନକୁ ଆସିଯାଉଛି: ଆମେ ନଦେଲେ ସେମାନେ ଆମ ଆତ୍ମସମ୍ମାନକୁ ନେଇପାରିବେ ନାହିଁ (They can't take away our self-respect if we do not give it to them) । ସତରେ ଆଜି ଆତ୍ମସମ୍ମାନଟିକୁ ଦେଇଦେବା ପରେ ଆମପାଖରେ ଆଜି ମନୋହରପୁରର ଲଜ୍ଜା ଛଡ଼ା ଅଛି କ'ଣ ? ମନୋହରପୁରର କୋଳାହଳ ତ ଏବେ ସବୁରି ପାଖରେ ପହଁଞ୍ଚିସାରିଛି, ମାତ୍ର ସେଠାକାର ନିରବତାର ପରିଭାଷାକୁ ବୁଝିପାରିଲେ ହିଁ ଅସଲ ସମସ୍ୟାର ସମାଧାନ ହୋଇପାରିବ ।



# ବୁଦ୍ଧିଜୀବୀ ଓ ଯୋଗନିଦ୍ରା

ସେଦିନ ଅପରାହ୍ନରେ ମୁଙ୍ଗେରସ୍ଥିତ ବିହାର ଯୋଗ ବିଦ୍ୟାଳୟର ସ୍ୱାମୀ ନିରଞ୍ଜନାନନ୍ଦ ସରସ୍ୱତୀଙ୍କ ତତ୍ତ୍ୱାବଧାନରେ ସ୍ୱାମୀ ସୂର୍ଯ୍ୟମଣି ସରସ୍ୱତୀଙ୍କ ପ୍ରଣୀତ 'ଯୋଗିକ୍ ମ୍ୟାନେଜ୍‌ମେଣ୍ଟ ଅଫ୍ ଷ୍ଟ୍ରେସ୍' ବହିଟି ଓଲଟାଉଥିଲି । ଗୋଟିଏ ପରିଚ୍ଛେଦରେ ଯୋଗନିଦ୍ରା ସମ୍ପର୍କରେ ବିସ୍ତୃତ ବିବରଣୀ ଦିଆଯାଇଛି, ଯାହା ଆଧୁନିକ ମଣିଷ ପାଇଁ ମାନସିକ ଭାରସାମ୍ୟ ରକ୍ଷା କରିବା ନିମିତ୍ତ ଏକ ଅମୋଘ ବ୍ୟବସ୍ଥା ବୋଲି କୁହାଯାଇଛି । ଏ ଯୋଗନିଦ୍ରାଟି କ'ଣ ?

ଆଗରୁ ଅନେକେ ଯୋଗନିଦ୍ରାକୁ 'ନିର୍ବିକଳ୍ପ ସମାଧି' ବୋଲି ମତ ଦେଇଥା'ନ୍ତି । ପୁରାଣବର୍ଣ୍ଣିତ କ୍ଷୀରସାଗର ଭିତରେ ସୃଷ୍ଟିନିୟନ୍ତା ବିଷ୍ଣୁଙ୍କ ଅନନ୍ତଶୟନ ଅବସ୍ଥାକୁ ମଧ୍ୟ ଯୋଗନିଦ୍ରା କୁହାଯାଇଥାଏ । ମାତ୍ର ଶ୍ରୀ ସରସ୍ୱତୀଙ୍କ ପୁସ୍ତକରେ ଯୋଗନିଦ୍ରାର ବୈଜ୍ଞାନିକ ବିଶ୍ଳେଷଣ କରାଯାଇଛି ।

ତା' ହେଲା– ଯୋଗନିଦ୍ରାର ପ୍ରାଥମିକ ଅବସ୍ଥାରେ ଅନେକ ଇଚ୍ଛା ଓ କଳ୍ପନା ମସ୍ତିଷ୍କକୁ ମେଘ ପରି ଆଚ୍ଛାଦିତ କରି ରଖେ। କିଛି ସମୟ ପରେ, ମସ୍ତିଷ୍କାକାଶରୁ ଏଇ ମେଘମାନେ ଅପସରି ଯାଆନ୍ତି ଏବଂ ଶରୀର ସହ ବେଢ଼ି ହୋଇ ରହିଥିବା ସକଳ ସଚେତନତା ଆସ୍ତେଆସ୍ତେ ଉଭେଇ ଯାଏ। ପରେପରେ ଗୋଟାଏ କୋମଳଭାବ ସମଗ୍ର ସତ୍ତାକୁ ନିଜ ଅକ୍ତିଆରରେ ବାନ୍ଧି ରଖେ ଯେପରି। ଶାରୀରିକ ସ୍ତରରେ ଯୋଗନିଦ୍ରା ଆଣିଦିଏ ଅଲୌକିକ ଦୃଷ୍ଟିଭଙ୍ଗୀ ଓ ପ୍ରବଣତା ଉପରେ ପରିପକ୍ୱ ନିୟନ୍ତ୍ରଣ। ଅନେକ ଗବେଷଣାରୁ ଏହା ପ୍ରାୟ ନିଶ୍ଚିତ ହୋଇଛି ଯେ ଯୋଗନିଦ୍ରା ଏକ 'ସ୍ୱପ୍ନାବଦ୍ଧ ଅବସ୍ଥା' ଏବଂ 'ସ୍ୱଜନ ସମର୍ପଣ'। କେହିକେହି ଏହି ପ୍ରକ୍ରିୟାକୁ ସ୍ନାୟବିକ ପ୍ରକ୍ରିୟାର ସହାବସ୍ଥାନ ତଥା ମାନସିକ ଓ ଶାରୀରିକ ସ୍ଫୂର୍ତ୍ତି ବୋଲି ଅଭିହିତ କରିଥା'ନ୍ତି। ପ୍ରକାରାନ୍ତରେ ମସ୍ତିଷ୍କର ବିଦ୍ୟୁତ୍-ସ୍ପନ୍ଦନ ପ୍ରଣାଳୀର ଏହା ଅନ୍ୟତମ ପ୍ରକ୍ରିୟା ଏବଂ ଏହାଫଳରେ ହୃଦସ୍ପନ୍ଦନର ଗତି ଶିଥିଳ ହେବା ସହ ଶରୀରସ୍ଥ ଷ୍ଟ୍ରେସ୍ ହର୍‌ମୋନ୍ (Stress Hormone) ସଞ୍ଚାଳନରେ ପରିବର୍ତ୍ତନ ଆସିଥାଏ।

ଠିକ୍ ଏତିକିବେଳେ ପହଞ୍ଚିଗଲେ ଜଣେ ବନ୍ଧୁ। ବୃତ୍ତି ତାଙ୍କର ରାଜନୀତି ନହେଲେବି ରାଜନୈତିକ ହଟଚମଟ ତଥା ଘଟଣାବଳୀ ସହ ନିଜକୁ ଏକାତ୍ମ କରିବା ତାଙ୍କର ଗୋଟିଏ ସମ୍ଭ୍ରାନ୍ତ ଅଭ୍ୟାସ। ଚିରାଚରିତ ଢଙ୍ଗରେ ସେ ଏଥର ଅଭିଯୋଗ କଲେ: ରାଜ୍ୟରେ ଗତ ମାସରେ ଦୁଇଦୁଇଟା ଘଟଣା ଘଟିଗଲା, ଅଥଚ କୌଣସି ବୁଦ୍ଧିଜୀବୀଙ୍କ କଲମ ସେଥିନେଇ ଆଦୌ ବ୍ୟସ୍ତ ହେଲାନି ! ପଗ୍ରିରି ବୁଝିଲି, ଜଣେ ନାରୀଙ୍କୁ ନେଇ ସମ୍ପ୍ରତି ଓଡ଼ିଶାରେ ସୃଷ୍ଟି ହୋଇଥିବା ହଇଚଇ ଏବଂ ଜଣେ ବିଦେଶୀ ନାଗରିକ ଓ ତାଙ୍କର ଦୁଇପୁତ୍ରଙ୍କୁ ଜୀଅନ୍ତା ପୋଡ଼ି ମାରିଦେବାର କରୁଣ ଘଟଣା। ଦୁଇଟିଯାକ ଘଟଣାର ଆରମ୍ଭ ହୁଏ

ଅନ୍ଧକାରରେ ଏବଂ ଦୁଇଟିଯାକ ଘଟଣା ରାଜନୈତିକ ରୂପରେଖ ନେବାପରେ ରାଜ୍ୟ ତଥା ଦେଶର ବରିଷ୍ଠ ବିଗ୍ରହପତିଙ୍କ ଦ୍ୱାରା ତଦନ୍ତର ପରିସରଭୁକ୍ତ ହୁଏ । ତଦନ୍ତର ସମୁଦ୍ରମନ୍ଥନରୁ ଅମୃତ ନା ବିଷ ବାହାରିବ ତା' କେବଳ ସମୟ କହିବ । ତେବେ ବନ୍ଧୁଙ୍କ ଅଭିଯୋଗକୁ ହସି ଉଡ଼େଇ ଦେବା ସମ୍ଭବ ନଥିଲା ।

ସତରେ, ଆମର ବୁଦ୍ଧଜୀବୀମାନେ କରୁଛନ୍ତି କ'ଣ ? ଏକଦା ଜଣେ ସମାଲୋଚକ ବିଦ୍ରୂପ କରି କହିଥିଲେ: ଆମ ଦେଶରେ ଥିବା ଲୋକଙ୍କୁ ତିନିଭାଗରେ ବିଭକ୍ତ କରାଯାଇପାରେ, ସେମାନେ ହେଲେ ସ୍ୱପ୍ନଜୀବୀ, ରୂପଜୀବୀ ଓ ମସ୍ତ୍ୟଜୀବୀ ।' ଏକଦା ରାଜସ୍ଥାନର ଦେଓରାଲା ଗ୍ରାମରେ ଗୋଟିଏ ପରିବାରରେ ସ୍ୱାମୀର ଜଳନ୍ତା ଜୁଇରେ ପତ୍ନୀକୁ ଝାସ ଦେବାକୁ ପଡ଼ିଥିବା ଘଟଣା ସମଗ୍ର ବିଶ୍ୱକୁ ଆଶ୍ଚର୍ଯ୍ୟ ଓ ଆଘାତ ଦେଇଥିଲା । ସେଇ ଲଜ୍ଜାକର ପରିସ୍ଥିତିକୁ ନେଇ ବିଶିଷ୍ଟ ଔପନ୍ୟାସିକ ମୁଲକ୍ ରାଜ୍ ଆନନ୍ଦ୍ 'ହିନ୍ଦୁ' ସମ୍ବାଦପତ୍ରରେ ଗଳ୍ପଟିଏ ରଚନା କରି ନାରୀର ଅସହାୟତାକୁ ଏମିତି ନିଖୁଣ ଭାବେ ବର୍ଣ୍ଣନା କରିଥିଲେ ଯେ ମନେ ହେଉଥିଲା, ସତେ ଯେମିତି ନିଜେ ଶ୍ରୀ ଆନନ୍ଦ ସେଇ ଲୋମହର୍ଷଣକାରୀ ଦୃଶ୍ୟର ଚକ୍ଷୁଷ ବର୍ଣ୍ଣନା ଦେଇଛନ୍ତି ! ଅନୁରୂପ ଭାବେ, ଭାରତରେ ଜରୁରୀ ପରିସ୍ଥିତି ଜାରିକୁ ସମାଲୋଚନା କରି ଓଡ଼ିଶାର ଅନେକ କବି ଓ ଗାଳ୍ପିକ ସୃଜନକ୍ରିୟାରେ ଲିପ୍ତ ରହିଥିଲେ । ସେମାନଙ୍କ ଭିତରେ କବି କୁମାର ମହାନ୍ତିଙ୍କ କବିତା 'ବାନ୍ଧି ନେଇ ଯିବ ପୋଲିସ୍‌ବାଲା' ଓ ଡଃ କୃଷ୍ଣପ୍ରସାଦ ମିଶ୍ରଙ୍କ ଗଳ୍ପ 'ବଂଶୀବାଦକ' ଓ ସୁରେନ୍ଦ୍ର ମହାନ୍ତିଙ୍କ କିଛି ଗଳ୍ପ ଆଜି ଉଜ୍ଜ୍ୱଳ ଉଦାହରଣ ହୋଇ ରହିଛି । ମାତ୍ର ଆଜିର ବୁଦ୍ଧିଜୀବୀ ସାମାଜିକ ଅବ୍ୟବସ୍ଥା ଓ ଅନ୍ୟାୟ ବିରୁଦ୍ଧରେ ପ୍ରତିବାଦ କରିବାର ଯୁ' ଟିକକ ଯେପରି ହରାଇ ବସିଛି ! କ'ଣ ପାଇଁ ତା'ର ଏ ମୌନବ୍ରତ ? ତା'ର ଉତ୍ତର ଦିଅନ୍ତି ବିଶିଷ୍ଟ ସାମ୍ବାଦିକ କୁଲ୍‌ଦୀପ୍ ନାୟାର୍

: "ସବୁଠାରୁ ଖରାପ କଥା ହେଉଛି ଭାରତୀୟ ଜନତା ଦଳ ଏବଂ ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘ ଯାହା ଏବେ କରୁଛି ହିନ୍ଦୁମାନେ– ମୁଖ୍ୟତଃ ବୁଦ୍ଧିଜୀବୀମାନେ ତାକୁ ବାଧ୍ୟ ହୋଇ ସମର୍ଥନ କରୁଛନ୍ତି। ସେମାନେ (ବୁଦ୍ଧିଜୀବୀମାନେ) ଜରୁରୀକାଳୀନ ପରିସ୍ଥିତି ବେଳେ (୧୯୭୫-୭୭) ବିଫଳ ହୋଇଥିଲେ ଏବଂ ଏବେମଧ୍ୟ ବିଫଳ ହେଉଛନ୍ତି। ଯେଉଁ କଥାଟି ଠିକ୍ ଏବଂ ଯେଉଁ ଠିକ୍ କଥାଟି ସେମାନଙ୍କର କରିବାର ଇଚ୍ଛା ଅଛି, ସେଇ ସଚେତନତା ଆଜି ଭୟ ଏବଂ ଧମକ ଦ୍ୱାରା ପ୍ରତିହତ ହୋଇଛି। ସେମାନେ କେବଳ ସୁବିଧାବାଦୀ ପାଲଟିଛନ୍ତି।" (ଇଣ୍ଡିଆନ୍ ଏକ୍ସପ୍ରେସ୍, ୨.୨.୯୯)

ଏଇ 'ସୁବିଧାବାଦ' ହିଁ ସବୁ ସମସ୍ୟାର ମଞ୍ଜିକୁ ତାଳପତ୍ର ମେଲାଇବାରେ ସାହାଯ୍ୟ କରିଛି। ସାମ୍ପ୍ରତିକ ସମୟର ସବୁଠାରୁ ବିଡ଼ମ୍ବନା ଭାବେ ଉଭା ହେଇଛି ଏଇ ସୁବିଧାବାଦ ଯଥାର୍ଥରେ ସେଦିନ କବି ଏଲିୟଟ୍ କହିଥିଲେ: "ବଞ୍ଚିବା ଭିତରେ ହଜାଇ ଦେଇଥିବା ଜୀବନ ଏବେ କେଉଁଠି ?/ ଜ୍ଞାନ ଭିତରେ ହଜାଇ ଦେଇଥିବା ବିଜ୍ଞତା ଏବେ କେଉଁଠି ?/ ସୂଚନା ଭିତରେ ହଜାଇ ଦେଇଥିବା ଜ୍ଞାନ ଏବେ କେଉଁଠି ? (Where is the life we have lost in living ?/ Where is the wisdom we have lost in knowledge ?/ Where is the knowledge we have lost in information ?)

ଜଣେ ବୁଦ୍ଧିଜୀବୀ ପ୍ରଥମତଃ ଜଣେ ବ୍ୟକ୍ତି। ବ୍ୟକ୍ତି ଭାବେ ଅନ୍ୟର ଦୁଃଖ ସହ ନିଜକୁ ଏକାତ୍ମ କରିବାରେ ହିଁ ତା'ର ବ୍ୟକ୍ତିତ୍ୱର ସାର୍ଥକତା ପ୍ରତିପାଦିତ ହୁଏ, ନଚେତ୍ ମୁଖାଧାରୀ ଗଧଟିର ଅବସ୍ଥା ଭୋଗିବାକୁ ପଡ଼େ। ଏକଦା ତରୁଣ ଗଧଟିଏ ସିଂହର ଚମଡ଼ା ପାଇଁ ତା'ର ପିତାମାତାଙ୍କ ପାଖରେ ଅଳି କଲା, ଉଦ୍ଦେଶ୍ୟ ଥିଲା ସେଇଟିକୁ ପିନ୍ଧି ସେ ନାଚିବ। ବହୁ କଷ୍ଟରେ ତା'ର ପିତାମାତା ପୁତ୍ରର ଅଳି

ପୂରଣ କରନ୍ତେ ତରୁଣ ଗଧଟି ନିଜକୁ ସିଂହ ମନେକରି ନାଚିବା ଫଳରେ ଭୀତତ୍ରସ୍ତ ଲୋକେ ତାକୁ ଦେଖି ଦୌଡ଼ି ପଳାଇବାକୁ ଲାଗିଲେ । ମାତ୍ର ତା'ର କାନର ଦୀର୍ଘତା ଏବଂ ଗର୍ଜନ ପାଇଁ ଉଦ୍ୟତ ହେବା ସମୟର ରଢ଼ି ତାକୁ ଅସୁବିଧାରେ ପକାଇଲା ଏବଂ ଗଧଟି ପ୍ରାଣ ବିକଳରେ ଆତ୍ମରକ୍ଷା ନିମିତ୍ତ ପଳାୟନକୁ ଶ୍ରେଷ୍ଠ କାର୍ଯ୍ୟ ବୋଲି ମନେକଲା । ଏହି ସମୟରେ ସେ ତା'ର ଆୟାସ ଲବ୍ଧ ସିଂହପୋଷାକଟିକୁ ଛାଡ଼ି ଖ୍ସିଲିଯିବା ଫଳରେ ପାର୍ଶ୍ୱବର୍ତ୍ତୀ ଲୋକେ ହସିହସି କେବଳ ଯେ ବେଦମ୍ ହେଲେ ତା' ନୁହେଁ, ତା' ଉପରକୁ ଟେକା ଫିଙ୍ଗିଲେ । ଆଜିର ବୁଦ୍ଧିଜୀବୀମାନେ ନିରବତାର ଯେଉଁ ମୁଖା ପିନ୍ଧି ବୁଲୁଛନ୍ତି ତରୁଣ ଗଧଟି ପରି ସେମାନେ ଉପହସିତ ହେବାକୁ ଆଉ ବେଶୀ ଡେରି ନାହିଁ । ପ୍ରକାରାନ୍ତରେ ନୋବେଲ୍ ପୁରସ୍କାର ବିଜେତା ପ୍ରକୃତିବିତ୍ କନ୍‌ରାଡ୍ ଲୋରେଞ୍ଜ୍‌ଙ୍କ ଉକ୍ତିଟି ଆମେ ଦୋହରାଇ ପାରିବା : ସଭ୍ୟ ମଣିଷ ଏବଂ ପଶୁମାନଙ୍କ ଭିତରେ ହଜିଯାଇଥିବା ଯୋଗସୂତ୍ରଟି ମୁଁ ପାଇଯାଇଛି ବୋଲି ଭାବୁଛି– ତା' ହେଉଛି 'ଆମେ' ।' (I believe I have found the missing link between animals and Civilised Man– it is WE)

ବୁଦ୍ଧିଜୀବୀମାନଙ୍କ ସମ୍ପର୍କରେ ଆମେ ନିଶ୍ଚିତ ଭାବେ ଏତିକି କହିପାରିବା ଯେ ସେମାନେ ଏବେ ଯୋଗନିଦ୍ରାରେ ଅଛନ୍ତି ଏବଂ ସେ ନିଦ୍ରା ଖୁବ୍ ନିକଟରେ ଭାଙ୍ଗିବାର ନାହିଁ, କାରଣ ଯାହା ବି ହେଉନା କାହିଁକି ।



# ଗୁଡ୍‌ଲିର ଜେଜେବାପା

ସେଦିନ ସନ୍ଧ୍ୟାରେ 'ଗୁଡ୍‌ଲି' ସହ ଦେଖା ହୋଇଗଲା । ସାନ୍ଧ୍ୟ ଭ୍ରମଣର କିଛି ମୁହୂର୍ତ୍ତ ସେ ମୋ' ପାଖରେ ଖର୍ଚ୍ଚ କଲାବେଳେ ମୁଁ ତା'ର ପଢ଼ାପଢ଼ି କଥା ସ୍ୱଭାବସୁଲଭ ସ୍ୱରରେ ପଚ୍ଚାରିଲି । ସବୁକଥାର ଉତ୍ତର ଦେଇ ଚ୍ଚାଲିଥାଏ ସେ । ଠାଏ କିନ୍ତୁ ଅଟକିଗଲା । ତା' ଆଖିରେ ହଠାତ୍ ଶୂନ୍ୟତା ଭରିଗଲା ଯେମିତି ।

: ହ୍ୱାଟ୍ ଇଜ୍ ଇଓର୍ ଗ୍ରାଣ୍ଡ୍‌ଫାଦର୍ସ୍ ନେମ୍ ? ମୁଁ ପଚ୍ଚାରିଥିଲି । କୋଉ ଏକ ଅନ୍ଧଗଳିରେ ହଜିଗଲା ଯେମିତି ସେ ମୋ ପ୍ରଶ୍ନରେ । 'ଗୁଡ୍‌ଲି' ହେଉଛି ମୋର ସହକର୍ମୀଙ୍କର ଚ୍ଚାରିବର୍ଷର ଏକମାତ୍ର କନ୍ୟା ଏବଂ ଏବେ ସେ ଗୋଟିଏ ପବ୍ଲିକ୍ ସ୍କୁଲ୍‌ର କିଣ୍ଡର୍‌ଗାର୍ଟେନ୍‌ରେ ଅଧ୍ୟୟନରତା । ମୋ'ର ପ୍ରାଥମିକ ପ୍ରଶ୍ନ ଯଥାଃ ତା'ର ବାପା, ମାଆ, ସ୍କୁଲ୍, ଶ୍ରେଣୀ ଏବଂ ଶିକ୍ଷୟିତ୍ରୀଙ୍କ ନାଁ ସଠିକ୍ ଭାବେ କହିପାରିଥିଲା

ସେ । ସବୁ ଅସୁବିଧା ହୋଇଗଲା, ଯେତେବେଳେ ମୁଁ ଦୁଇଥର ପଗ୍ଭରିଦେଲିः ତୁମ ଜେଜେବାପାଙ୍କ ନାଁ କ'ଣ ? ଆଉ ଅଧିକ ସମୟ ପଗ୍ଭରିଥିଲେ ହୁଏତ ସେ ଦୁଃଖରେ କାନ୍ଦି ପକାଇଥା'ନ୍ତା ଭାବି ସେଠାରୁ ମୁଁ ତୁରନ୍ତ ଅନ୍ୟତ୍ର ଗ୍ଭଲିଯାଇଥିଲି ।

ଏଇ କଥାଟିକୁ ସହଜରେ ଗ୍ରହଣ କରିବା ହୁଏତ ସମ୍ଭବ ନଥିଲା, ଗୁଡ୍‌ଲି କ'ଣ ପାଇଁ ତା'ର ଜେଜେବାପାଙ୍କ ନାଁ କହିପାରିଲାନି ? ସେଥିପାଇଁ ତାକୁ ଦୋଷ ଦେଇହେବ କି ? ମୋ' ପାଇଁ 'ଗୁଡ୍‌ଲି' ସେଦିନ ପ୍ରତୀକଟିଏ ହୋଇ ଠିଆ ହୋଇଥିଲା । ଆମ ଦେଶରେ ଏବେ ଜେଜେବାପା ଅଥବା ଜେଜେମା'ଙ୍କ ନାଁ କହି ପାରୁନଥିବା ଶିଶୁଙ୍କର ଆଦୌ ଅଭାବ ନାହିଁ । ଏଇଥିରୁ ଅନୁମାନ କରିହେବ ପରମ୍ପରା ବୃକ୍ଷଟି ଖାଲି ଉପରୁ ଯାହା ସୁନ୍ଦର ତଥା ଝଙ୍କାଳିଆ ଦେଖାଯାଉଛି; ମାଟି ତଳେ ଥିବା ତା'ର ଚେରଟିକୁ ଧୀରେଧୀରେ ଉଇ ଖାଇବା ଆରମ୍ଭ କଲାଣି । ସମୟ ଆସିବାକୁ ଆଉ ହୁଏତ ବେଶୀ ଡେରି ନାହିଁ, ଯେତେବେଳେ ଔପଗ୍ଭରିକ ନ୍ୟାୟରେ ଆମର ଉତ୍ତରପୁରୁଷମାନେ ଶ୍ରାଦ୍ଧପାଳନ ଅବସରରେ ପୂର୍ବପୁରୁଷଙ୍କ ନାମ ସ୍ମରଣ କରିବାକୁ ଗୋଟାଏ ଅଭିଶାପ ବୋଲି ମନେ କରିବେ । ଏସବୁର ମୂଳ କାରଣ ହେଉଛି, ଆମର ଯୌଥ ପରିବାରଗୁଡ଼ିକ ଭାଙ୍ଗି ଏବେ ସୃଷ୍ଟି ହୋଇଥିବା କ୍ଷୁଦ୍ର ପରିବାର (Nucleus Family)ର କଳ୍ପନା; ବିଶେଷକରି ସହର ଅଥବା ସହରାଭିମୁଖୀ ଗ୍ଭକିରୀ ଜୀବନର ଏହା ହେଉଛି ଦୟନୀୟ ପରିସ୍ଥିତି । ଅବଶ୍ୟ ଯୌଥ ପରିବାର ସମ୍ପର୍କରେ ଓକିଲାତି କରିବାର ଅଭିପ୍ରାୟ ଏ ଲେଖକର ଆଦୌ ନାହିଁ । ମାତ୍ର, ଉକ୍ତ ସାମାଜିକ ବ୍ୟବସ୍ଥାରୁ ମିଳୁଥିବା ସୁଫଳ ଏବେ ସୁଦୂର ସ୍ୱପ୍ନ ପରି ପ୍ରତୀୟମାନ ହେଲାଣି । ତେଣୁ ସେସମ୍ପର୍କରେ ଆବଶ୍ୟକୀୟ ପଦକ୍ଷେପ ନେବାପାଇଁ ବୁଦ୍ଧିଜୀବୀମାନଙ୍କୁ ଲେଖକ ନିବେଦନ କରୁଛି ।

ଆମର ସାମାଜିକ ଜୀବନ ଏବେ ବେଶ୍ ସଙ୍କୁଳିତ । ଇତିହାସ ବିସ୍ମରଣ ହେବା ଆମର ପରମ୍ପରାଗତ । ଅତୀତରେ ଯେତେସବୁ ପରାକ୍ରମଶାଳୀ ରାଜନ୍ୟବର୍ଗ ଏ ରାଜ୍ୟକୁ ଶାସନ କରିଥିଲେ, ସେମାନେ ନିଜ ନିଜର ଭାଷା ଓ ଧର୍ମ ରାଜ୍ୟବାସୀଙ୍କ ଉପରେ ଲଦି ଦେବାପାଇଁ ଚେଷ୍ଟା କରି ବିଫଳ ହୋଇଥିଲେ । ପ୍ରକାରାନ୍ତରେ ସେମାନେ ଜଗନ୍ନାଥ ଧର୍ମକୁ ଗ୍ରହଣ କରି ତତ୍କାଳୀନ ପ୍ରଜାଙ୍କ ପ୍ରିୟଭାଜନ ହୋଇଥିଲେ । ଏବେ ସମୟ ବଦଳି ଯାଇଛି । ଆମେ ଆମର ଗବାକ୍ଷଗୁଡ଼ିକୁ ଉନ୍ମୁକ୍ତ ରଖିଛୁ ବାହାରର ହାଓ୍ୱା ଖାଇବା ପାଇଁ । ସେଇଥିପାଇଁ ଆମ ବଗିଚ୍ଚାରେ ଏବେ କନିଅର, ଟଗର, ଚମ୍ପା ବଦଳରେ ଅଛନ୍ତି ଡାଲିଆ, ଜିନିଆ, ଗ୍ୱଇନାଗେଣ୍ଡୁ, ବ୍ୟାଚ୍‌ଲର୍ସ ବଟନ୍ ଓ ଅନେକ ଜାତିର କ୍ରୋଟନ୍ ଓ କାକ୍‌ଟସ୍ ।

କିଛିଦିନ ତଳେ ରାଜଧାନୀର ଏକ ପ୍ରଗତିକାମୀ ସଂସ୍ଥା ମହିଳାମାନଙ୍କ ପାଇଁ ଏକ ହୁଳୁହୁଳି ପ୍ରତିଯୋଗିତାର ଆୟୋଜନ କରିଥିଲେ । ବିଭିନ୍ନ ପୂଜାପାର୍ବଣରେ ହୁଳୁହୁଳି ପକାଇବାର ଯେଉଁ ବିଧିଟିଏ ଥିଲା ତାହା କ୍ରମଶଃ ସଙ୍କୁଚିତ ହୋଇ ଏବେ ନିଶ୍ଚିହ୍ନ ହେବାକୁ ଆରମ୍ଭ କଲାଣି । ସଂସ୍ଥାଟିର ଲକ୍ଷ୍ୟ ହେଉଛି ଉତ୍ତମ ପରମ୍ପରାକୁ ଅବକ୍ଷୟରୁ ରକ୍ଷା କରିବା ବା ସ୍ଥାନବିଶେଷରେ ପୁନରୁଜ୍ଜୀବିତ କରିବା । କିଛିଦିନ ତଳେ ଜଣେ ଭଦ୍ରବ୍ୟକ୍ତିଙ୍କ ଡ୍ରଇଙ୍ଗ୍‌ରୁମ୍‌ରେ ଗୋଟିଏ ସୁନ୍ଦର ପେଣ୍ଟିଙ୍ଗ୍ ଦେଖିବାର ସୁଯୋଗ ମିଳିଥିଲା । ପ୍ରଶ୍ନ କରନ୍ତେ, ଭଦ୍ରବ୍ୟକ୍ତି ମହୋଦୟ ଗୋଟିଏ ହେଲେ ପ୍ରଶ୍ନର ଉତ୍ତର ଦେଇ ପାରିନଥିଲେ କେବଳ ପେଣ୍ଟିଙ୍ଗ୍‌ଟିକୁ ଖରିଦ୍ କରିଥିବା ଦାମ୍ ଛଡ଼ା । ଅନେକଙ୍କର ଏଇ ଅବସ୍ଥା । ଯେଉଁସବୁ ସମଗ୍ରୀ ସେମାନେ ଡ୍ରଇଙ୍ଗ୍ ରୁମ୍‌ରେ ସଜାଇ ରଖିଥା'ନ୍ତି– ସେସବୁର ଦାମ୍ (price) ମନେ ରଖିଥା'ନ୍ତି; ମାତ୍ର ତା'ର ମୂଲ୍ୟ (value) ଜାଣିବା ପାଇଁ ସେମାନଙ୍କ ପାଖରେ ସମୟ ଓ ଆଗ୍ରହ

ନଥାଏ। ଫମ୍ପା ସଂସ୍କୃତିର ଉଦାହରଣ ବୋଧେ ଏତେପାଖରୁ ଆମେ କୋଉଠି ପାଇବା ନାହିଁ।

ଡ୍ରଇଙ୍ଗ୍ ରୁମ୍ ଟପି ଆମେ ଏଥର ରୋଷେଇ ଘର ଆଡ଼କୁ ଯିବା। ଏବେ ସେଠି ଆଉ ଛୁଞ୍ଚିପତର, କାଞ୍ଜି, ଖିରିସା ପାଣି, ଆରିସା ପିଠା, ସିଙ୍ଗା ମଣ୍ଡା କିମ୍ବା ଏଣ୍ଡୁରି ପିଠା କି ପୋଡ଼ ପିଠା ପାଇବା ସମ୍ଭବ ନୁହେଁ। ସେସବୁର ଜାଗା ଏବେ ନେଇଛି ଇଡ୍‌ଲି, ଦୋସା, କେକ୍, ବ୍ରେଡ୍, ପଲାଉ ଇତ୍ୟାଦି। ମୋଟାମୋଟି କହିବାକୁ ଗଲେ, ଆମ ଅର୍ଥନୈତିକ କ୍ଷେତ୍ରରେ ଜଗତୀକରଣ ପ୍ରକ୍ରିୟାଟି ଯେତେଶୀଘ୍ର ଆସି ପାରିନାହିଁ, ତା'ର ଅନେକ ଆଗରୁ ଏଇ ପ୍ରକ୍ରିୟାଟି ଆମ ସାଂସ୍କୃତିକ ଜୀବନ ପ୍ରଣାଳୀରେ ଆସିଯାଇଛି। କିଛିବର୍ଷ ପରେ ରଜଦୋଳି ଓ ପୁଚି ଖେଳର ଭିଡିଓ କ୍ୟାସେଟ୍ ବିଦେଶୀ କମ୍ପାନୀ ଦ୍ୱାରା ପ୍ରସ୍ତୁତ ହୋଇ ଆମ ବଜାରକୁ ଆସିବ, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ।

କିନ୍ତୁ ଏସବୁର ବିଲକ୍ଷଣ ପାଇଁ ଆମେ ଆମର ପିଲାମାନଙ୍କୁ ଦାୟୀ କରିପାରିବା କି ? ଏ ସମ୍ପର୍କରେ ବେଲୁନ୍‌ବାଲାର କଥାଟି ବିଗ୍ଭର କରାଯାଇପାରେ। ଗୋଟିଏ ମେଳାରେ ଥରେ ବେଲୁନ୍‌ବାଲାଟିଏ ନାନାରଙ୍ଗର ବେଲୁନ୍ ବିକ୍ରି କରୁଥିଲା। ଯେତେବେଳେ ପିଲାମାନଙ୍କ ଭିଡ଼ ତା' ପାଖରୁ କମିଯାଉଥିଲା, ବେଲୁନ୍‌ବାଲାଟି ଗୋଟିଏ ବେଲୁନ୍‌ରେ ହିଲିୟମ୍ ଗ୍ୟାସ୍ ଭର୍ତ୍ତି କରି ଉପରକୁ ଛାଡ଼ି ଦେଉଥିଲା, ବେଲୁନ୍‌ଟି ଆକାଶର ବହୁ ଉଚ୍ଚକୁ ଉଠିବା ଦେଖି ଥରେ ଗୋଟିଏ ବାଳକ ବେଲୁନ୍‌ବାଲା ପାଖରେ ପହଞ୍ଚିଲା ଓ ପଗ୍ଭରିଲା :

: ତମ ପାଖରେ ନୀଳରଙ୍ଗର ବେଲୁନ୍ ଅଛି ?

: ଅଛି, ନୀଳ, ନାଲି, ବାଇଗଣି, କଳା... ସବୁ ରଙ୍ଗର ବେଲୁନ୍ ଅଛି ମୋ' ପାଖରେ। କୋଉଟା ତମର ଦରକାର ? ବେଲୁନ୍‌ବାଲା ପ୍ରଶ୍ନ କଲା।

ତା'ର ପ୍ରଶ୍ନର ଉତ୍ତର ନଦେଇ ପିଲାଟି ପୁଣି ଥରେ ପ୍ରଶ୍ନକଲା, ଆକାଶକୁ ଅଙ୍ଗୁଳି ଦେଖାଇ,

: ନୀଳ ବେଲୁନ୍ ବି ସେତିକି ଉପରକୁ ଯାଇପାରିବ ?

: ନୀଳ କି କଳା ବେଲୁନ୍ ନୁହଁ, ତା' ଭିତରର ଜିନିଷ ହିଁ ତାକୁ ଉପରକୁ ଉଠିବାରେ ସାହାଯ୍ୟ କରିବ ।' ବେଲୁନ୍‌ବାଲା ଉତ୍ତର ଦେଲା । ପବନ ଅପେକ୍ଷା ହିଲିୟମ୍ ଗ୍ୟାସ୍ ଯେ ବେଲୁନ୍‌କୁ ବେଶୀ ଉପରକୁ ନେଇପାରିବ, ସେ କଥା ଆମେ ଜାଣୁଁ । ଠିକ୍ ସେଇପରି ମଣିଷ ଭିତରର ଗୁଣ ବା ଦୁର୍ଗୁଣ ହିଁ ତାକୁ ଅନୁରୂପ ଭାବେ ବାଟ କଢ଼ାଇବ । ପ୍ରତ୍ୟେକ ଶିଶୁର ମନ ନିର୍ମଳ । ତା' ଭିତରେ କ'ଣ ପୂରାଇବାକୁ ହେବ ସେ କଥା ତା'ର ଅଭିଭାବକମାନେ ଚିନ୍ତା କରିବା କଥା । ନିକଟରେ ଗୋଟିଏ ଖବରକାଗଜରେ ବାହାରିଥିଲା ଯେ ପୂର୍ବେ ସିନେମା ଟିକେଟ୍‌ଟିଏ ପାଇଁ କିମ୍ବା ପିକ୍‌ନିକ୍ ଯିବା ଲାଗି ପିଲାମାନେ ସେମାନଙ୍କ ମାଆଙ୍କ ଜରିଆରେ ବାପାଙ୍କୁ କହୁଥିଲେ; ଏବେ ପିଲା ଓ ବାପାମାନଙ୍କ ଭିତରେ ସେସବୁ ପ୍ରତିବନ୍ଧକ ନାହିଁ । ମାତ୍ର ପରିସଂଖ୍ୟାନରୁ ଜଣାଯାଇଛି ଯେ ଅଧିକାଂଶ ବାପା ତାଙ୍କ ପିଲା ଠିକ୍ କେଉଁ କ୍ଲାସ୍‌ରେ ପଢୁଛନ୍ତି ବୋଲି ପଚ୍ଚରିଲେ ସଠିକ୍ ଉତ୍ତର ଦେଇ ପାରୁନାହାଁନ୍ତି । ଏଇ ପରିସ୍ଥିତିରେ 'ଗୁଡ୍‌ଲି' ତା'ର ଜେଜେବାପାଙ୍କ ନାଁ ନ କହି ପାରିବାରେ ଦୁଃଖ କଲେ ତାହା କେବଳ ଆକାଶକୁ କାଦୁଅ ଫିଙ୍ଗିବା ସଙ୍ଗେ ସମାନ ହେବ ।



# ପୃଥିବୀର କଥା

ଅନେକ ସମୟରେ ଗୋଟିଏ ଗୋଟିଏ ଘଟଣା ମଣିଷର ସମଗ୍ର ଜ୍ଞାନକୁ ଓଲଟପାଲଟ କରିଦିଏ । ନିଜର ଜ୍ଞାନ ଓ ବୁଦ୍ଧିର ଅହମିକା ସେ ସବୁ ଘଟଣା ସାମ୍ନାରେ ଭାଙ୍ଗି ଚୂର୍‌ମାର୍ ହୋଇଯାଏ । ସଦା ଅନୁସନ୍ଧିତ୍ସୁ ମନ ଅଟକି ଯାଏ ଗୋଟିଏ ଜାଗାରେ । ସେଇପରି ଏକ ଘଟଣାର ପୁନରାବୃତ୍ତି ଘଟିଛି ଇଙ୍ଗ୍‌ଲାଣ୍ଡ୍‌ରେ ଗତ ଖ୍ରିସ୍ଟମାସ୍ ରାତିରେ । ଘଟଣାଟି ଏଇପରି, "ଗତ ଖ୍ରିସ୍ଟମାସ୍ ରାତିରେ (୨୫ ଡିସେମ୍ବର୍, '୯୮) କେନ୍ଦ୍ରୀୟ ଇଙ୍ଗ୍‌ଲାଣ୍ଡ୍‌ସ୍ଥିତ ଏକ ମ୍ୟୁଜିୟମ୍‌ର କର୍ମକର୍ତ୍ତାମାନେ ଗୋଟିଏ ମହିଳା ଭୂତର ଫଟୋଚିତ୍ର ଉତ୍ତୋଳନ କରିବାରେ ସମର୍ଥ ହୋଇପାରିଛନ୍ତି । ଏହି ମହିଳା ଜଣକ ଭିକ୍ଟୋରିଆ ଯୁଗର ପୋଷାକ ପରିଧାନ କରିଥିବା ଦେଖାଯାଇଥିଲା । ଅଷ୍ଟାଦଶ ଶତାବ୍ଦୀରେ କେନ୍ଦ୍ର ଇଙ୍ଗ୍‌ଲାଣ୍ଡ୍‌ର ଲିସେଷ୍ଟର୍ ସହରରେ ଯନ୍ ଏଲିସ୍ ନାମକ ଜଣେ ଶିଳ୍ପପତି ବାସ କରୁଥିଲେ । କାର୍ଲୋଟ୍ ହେଉଛନ୍ତି ତାଙ୍କର ଭଉଣୀ । ସେ ସମୟରେ କାର୍ଲୋଟ୍‌ଙ୍କ ମୃତ୍ୟୁଘଟଣା ବହୁ ହଟଚମଟ ସୃଷ୍ଟି କରିଥିଲା । ତାଙ୍କର ଅତୃପ୍ତ ଆତ୍ମା ସେଠାରେ ରହିଚି ବୋଲି ସମସ୍ତେ କୁହନ୍ତି । ସେ (କାର୍ଲୋଟ୍) ଅସ୍ଥିର ଭାବେ ଘରସାରା ବୁଲୁଥିବାର ମଧ୍ୟ

ଶୁଣାଯାଉଥିଲା । ଗତ ଖ୍ରିସ୍ଟମାସ୍ ରାତିରେ ପ୍ରାୟ ଛଅଫୁଟ୍ ଉଚ୍ଚତାର ଶ୍ୱେତବସ୍ତ୍ର ପରିହିତା ଏକ ଆକର୍ଷଣୀୟ ପ୍ରତିମୂର୍ତ୍ତି ଖୁବ୍ କମ୍ ସମୟ ରହି ଅଦୃଶ୍ୟ ହୋଇଯାଇଥିଲା । ପ୍ରତିମୂର୍ତ୍ତିର ପ୍ରବେଶ ଓ ପ୍ରସ୍ଥାନ ପାଇଁ କୌଣସି ଦ୍ୱାର ଉନ୍ମୁକ୍ତ ନଥିଲା ବୋଲି ମ୍ୟୁଜିୟମ୍‌ର କ୍ୟୁରେଟର୍ ଷ୍ଟୁଆର୍ଟ୍ ୱାର୍‌ବର୍ଟନ୍ ଜଣାଇଛନ୍ତି ।''

ଭୂତପ୍ରେତ ଉପରେ ଆଦୌ ବିଶ୍ୱାସ କରୁନଥିବା ବ୍ୟକ୍ତି ହୁଏତ ଏ ସମ୍ବନ୍ଧରେ ସେମାନଙ୍କ ଧାରଣାକୁ ବଦଳାଇବା ପାଇଁ ବାଧ୍ୟ ହେବେ । ମଣିଷ ନିଜକୁ ଯେତେ ଜ୍ଞାନୀ ବୋଲି ଆସ୍ଫାଳନ କଲେ ବି ତାହା ସୀମିତ ବୋଲି ବିଶ୍ୱାସ କରିବାରେ ଆଦୌ ଅସୁବିଧା ହେବ ନାହିଁ । ଅତୀତରେ ଏପରି କେତେକ ଘଟଣା ଘଟି ଯାଇଛି, ଯାହାର ରହସ୍ୟ ଉନ୍ମୋଚନ ହେଇପାରିନି ଏପାବତ୍ । ୧୬୧୧ ମସିହାର ଘଟଣା ଏଠି ନିଆଯାଇପାରେ । ବିଶିଷ୍ଟ ଇଂରାଜୀ କବି ଯନ୍ ଡନ୍‌ଙ୍କୁ ତାଙ୍କର ଜଣେ ବନ୍ଧୁ ସାର୍ ରବର୍ଟ୍ ଡ୍ରୁରେ ତାଙ୍କ ସହ ପ୍ୟାରିସ୍ ଯିବାପାଇଁ ଆମନ୍ତ୍ରଣ କଲେ । ଡ୍ରୁରେଙ୍କ ଆମନ୍ତ୍ରଣ ପାଇବାପରେ ଡନ୍ ଅସୁବିଧାରେ ପଡ଼ିଗଲେ କାରଣ ସେଇ ସମୟରେ କବି ଡନ୍‌ଙ୍କ ପତ୍ନୀ ଅନ୍ତଃସତ୍ତ୍ୱା ଥିଲେ ଏବଂ ସେ ତାଙ୍କୁ ଏକୁଟିଆ ଛାଡ଼ି ଯିବାକୁ ଚାହୁଁନଥିଲେ । ମାତ୍ର ଡ୍ରୁରେଙ୍କ ଆମନ୍ତ୍ରଣକୁ ଉପେକ୍ଷା କରିବା ତାଙ୍କ ପକ୍ଷରେ ସହଜ ନଥିଲା । କାରଣ, ଡ୍ରୁରେ ଥିଲେ ତତ୍‌କାଳୀନ ଇଙ୍ଗଲଣ୍ଡର ସବୁଠାରୁ ଧନଶାଳୀ ବ୍ୟକ୍ତି । ଏଣେ ଡନ୍‌ଙ୍କ ପତ୍ନୀ ତାଙ୍କୁ ଛାଡ଼ି ନ ଯିବାପାଇଁ ବାରମ୍ବାର ଡନ୍‌ଙ୍କୁ ଅନୁନୟ ହେଉଥିଲେ । ପତ୍ନୀଙ୍କର ଏକ ବଦ୍ଧ ଧାରଣା ଥିଲା ଯେ, ନିକଟ ଭବିଷ୍ୟତରେ ଯଦି ଡନ୍ ତାଙ୍କୁ ଛାଡ଼ି ଅନ୍ୟତ୍ର ଯାଆନ୍ତି ତେବେ ଏକ ବଡ଼ ଧରଣର ବିପର୍ଯ୍ୟୟ ଘଟିପାରେ । ଡ୍ରୁରେ ଅବଶ୍ୟ ତାଙ୍କ ଅଟ୍ଟାଳିକାରେ ଶ୍ରୀମତୀ ଡନ୍‌ଙ୍କ ରହିବାର ସମସ୍ତ ବ୍ୟବସ୍ଥା କରିଥିଲେ ।

ପ୍ୟାରିସ୍‌ରେ ପହଞ୍ଚିବାର ଦୁଇଦିନ ପରେ ହଠାତ୍ ଏକ ଅଭାବନୀୟ ଦୃଶ୍ୟ ଦେଖିଲେ ଶ୍ରୀ ଡନ୍ । କବି ଡନ୍‌ଙ୍କ ଜୀବନୀକାର ଆଇଜାକ୍

ୱାଲ୍‌ଟନ୍ ଲେଖିଛନ୍ତି "ଦୁଇ ବନ୍ଧୁଙ୍କ ଏକତ୍ର ରାତ୍ରିଭୋଜନ ପରେ, କବି ଡନ୍ ଏକୁଟିଆ କୋଠରି ଭିତରେ ପଦଚାରଣ କରୁଥିବା ସମୟରେ ତାଙ୍କ ପତ୍ନୀ ଉକ୍ତ କୋଠରିରେ ତାଙ୍କ ଚାରିପାଖରେ ଦୁଇଥର ଘୂରିବା ସେ ସ୍ପଷ୍ଟ ଦେଖିପାରିଲେ । ଏହାର କିଛି ସମୟ ପରେ ଡୁରେ କୋଠରିରେ ପ୍ରବେଶ କରନ୍ତେ ଡନ୍ ତାଙ୍କୁ ଏସବୁକଥା କହିଲେ । ଘଟଣାଟିର ସତ୍ୟାସତ୍ୟ ଜାଣିବା ପାଇଁ ପରଦିନ ସକାଳେ ଏକ ସ୍ୱତନ୍ତ୍ର ପରିଚାରକଙ୍କୁ ଡୁରେଙ୍କ ବାସଭବନକୁ ପଠାଗଲା ଓ ପ୍ରାୟ ବାରଦିନ ପରେ ପରିଚାରକଟି ଆସି ଖବର ଦେଲା ଯେ, ଶ୍ରୀମତୀ ଡନ୍ ଗୋଟିଏ ମୃତ ଶିଶୁସନ୍ତାନ ପ୍ରସବ କରିବାପରେ ଅତ୍ୟନ୍ତ ଦୁଃଖ ଓ ଯନ୍ତ୍ରଣା ଭିତରେ ଜୀବନ ବିତାଉଛନ୍ତି । ସବୁଠାରୁ ବିସ୍ମୟକର ଘଟଣା ହେଉଛି ଯେଉଁ ସମୟରେ ଶ୍ରୀ ଡନ୍ ତାଙ୍କ ପତ୍ନୀଙ୍କୁ ପ୍ୟାରିସର ନିଭୃତ କୋଠରିରେ ଦେଖିଥିଲେ ଠିକ୍ ସେଇ ମୁହୂର୍ତ୍ତରେ ହିଁ ତାଙ୍କ ଶିଶୁପୁତ୍ରକୁ ସେ ଜନ୍ମ ଦେଇଥିଲେ ।"

ଆଉ ଗୋଟିଏ ଘଟଣା— ପ୍ରସିଦ୍ଧ ମନୋବୈଜ୍ଞାନିକ କାର୍ଲ୍ ଗୁସ୍ତାଭ୍ ୟଙ୍ଗ୍‌ଙ୍କ ଜୀବନୀରୁ । ମୃତ୍ୟୁପରବର୍ତ୍ତୀ ଘଟଣା ସମ୍ପର୍କରେ ଜାଣିବା ଲାଗି ୟଙ୍ଗ୍ ବିଶେଷ ଆଗ୍ରହୀ ଥିଲେ । ସେ ଥରେ କହିଥିଲେ– ଆତ୍ମାର ଅବିନଶ୍ୱରତା କଥା ପ୍ରମାଣ କରିବା ସମ୍ଭବ ନୁହେଁ । ତେବେ ଆମର ମହାଜାଗତିକ ବିଶ୍ୱ ଏବଂ ଭୌତିକ ପୃଥିବୀ ଭିତରେ ଥିବା ସମ୍ପର୍କକୁ ଅସ୍ୱୀକାର କରି ହେବନି ।

ଥରେ ଜଣେ ବନ୍ଧୁଙ୍କ ମୃତ୍ୟୁ ପରେ ୟଙ୍ଗ୍ ତାଙ୍କର ସତ୍କାରରେ ଯୋଗ ଦେବାର ପରଦିନ ରାତ୍ରିର ଘଟଣା । ଶେଯ ଉପରେ ପଡ଼ି ସେ ତାଙ୍କ ସ୍ୱର୍ଗତ ବନ୍ଧୁଙ୍କ ସ୍ମୃତି ରୋମନ୍ଥନ କରୁଥାନ୍ତି । ଠିକ୍ ଏଇ ସମୟରେ ସେ ତାଙ୍କ ସ୍ୱର୍ଗତ ବନ୍ଧୁଙ୍କୁ ସାମ୍ନାରେ ଠିଆ ହୋଇଥିବା ଦେଖିଲେ । ଏଥର ବନ୍ଧୁଙ୍କ ଇସାରାରେ ସେ ତାଙ୍କୁ ଅନୁସରଣ କରି ଘରୁ ବାହାରି ଗଳିରାସ୍ତା ଦେଇ ବନ୍ଧୁଙ୍କ ଘରେ ପହଞ୍ଚିଲେ । ଏହାପରେ ସ୍ୱର୍ଗତ ବନ୍ଧୁଙ୍କ ବ୍ୟକ୍ତିଗତ

ପାଠାଗାରରେ ପହଞ୍ଚିଲେ; ଯେଉଁଠି ତାଙ୍କ ବନ୍ଧୁ ଗୋଟିଏ ବହି ଥାକ ପାଖରେ ଷ୍ଟୁଲ୍ ସାହାଯ୍ୟରେ ଠିଆ ହୋଇ ଏକ ନାଲିରଙ୍ଗର ବହିଟିକୁ ୟଙ୍ଗ୍‌ଙ୍କୁ ଅଙ୍ଗୁଳି ସାହାଯ୍ୟରେ ଦେଖାଇ ତତ୍‌କ୍ଷଣାତ୍ ଅଦୃଶ୍ୟ ହୋଇଗଲେ। ପରଦିନ ସକାଳେ ୟଙ୍ଗ୍ ବନ୍ଧୁଙ୍କ ବିଧବା ପତ୍ନୀଙ୍କୁ ଭେଟି ସବୁକଥା କହିଲେ। ବନ୍ଧୁପତ୍ନୀ ଓ ୟଙ୍ଗ୍ ପାଠାଗାରଟିକୁ ଯାଇ ଠିକ୍ ଜାଗାରେ ଷ୍ଟୁଲ୍‌ଟି ପଡ଼ିଥିବା ଦେଖିଲେ ଓ ଉକ୍ତ ବହିଟି ଥିଲା ବିଶିଷ୍ଟ ଔପନ୍ୟାସିକା ଏମିଲି ଜୋଲାଙ୍କ 'ଦି ଲିଗାସୀ ଅଫ୍ ଡେଥ୍'ର (The legacy of death) ଅନୁବାଦ। ଅବଶ୍ୟ ଅନେକ ସ୍ମୃତି ଭିତରୁ ଏହା ଥିଲା ୟଙ୍ଗ୍‌ଙ୍କ ଜୀବନର ଗୋଟିଏ ଘଟଣା। କାଳେ ବୈଜ୍ଞାନିକ ଜଗତରେ ସମସ୍ୟା ସୃଷ୍ଟିହେବ ସେଇ କାରଣରୁ ସେ ତାଙ୍କର ସବୁ ଅଭିଜ୍ଞତାକୁ ପ୍ରକାଶ କରି ନାହାଁନ୍ତି ବୋଲି ସ୍ୱୀକାର କରିଛନ୍ତି।

କିଛିଦିନ ତଳେ ଜଣେ ବନ୍ଧୁଙ୍କ ସହ ଦେଖାହେବାବେଳେ ଅନେକ କଥା ଭିତରୁ ଗୋଟିଏ ଘଟଣା ଥିଲା ଏଇପରି। ବିଶିଷ୍ଟ ଗାଳ୍ପିକ କୃଷ୍ଣପ୍ରସାଦ ମିଶ୍ରଙ୍କ ଦେହାନ୍ତ ହେବାର କିଛି ମାସ ପରର ଘଟଣା। ଶ୍ରୀ ମିଶ୍ରଙ୍କର ଜଣେ ଅନ୍ତରଙ୍ଗ ବନ୍ଧୁ ହେଉଛନ୍ତି ଔପନ୍ୟାସିକ ନୃସିଂହ ଚରଣ ପଣ୍ଡା। ଶ୍ରୀ ପଣ୍ଡାଙ୍କର ତନ୍ତ୍ର ସାଧନାରେ ରୁଚି ଅଛି ବୋଲି ବନ୍ଧୁ କହିଲେ। ଗାଳ୍ପିକ କୃଷ୍ଣ ପ୍ରସାଦ ନିଜର ମୃତ୍ୟୁର କିଛି ମାସ ପରେ ଦିନେ ରାତିରେ ଆସି ପହଞ୍ଚିଲେ ଶ୍ରୀ ପଣ୍ଡାଙ୍କ ବାସଭବନରେ ଏବଂ ନିଜ ସ୍ୱଭାବସୁଲଭ ଭଙ୍ଗୀରେ ଆସି ତାଙ୍କୁ ଟ୍ୱି' ବରାଦ କଲେ ଓ ଡ୍ରଇଙ୍ଗ୍ ରୁମ୍‌ରେ ଟ୍ୱି' ରଖିବା ପରେ ଆପେ ଆପେ ଟ୍ୱି' କପ୍ ଖାଲି ହୋଇଗଲା।

ଘଟଣାଟିରେ କେତେ ସତ୍ୟତା ରହିଚି ଜାଣିବାକୁ ଏ ଲେଖକ ସୁଯୋଗ ପାଇନାହିଁ। ମାତ୍ର ଏକଥାରେ ବିଶ୍ୱାସ କରେ ଯେ ଏଇ ଦୁଇ ଅଲଗା ଅଲଗା ପୃଥିବୀ ମଧ୍ୟରେ ବାଟଟିଏ ତିଆରି କରିବାରେ ବିଜ୍ଞାନପ୍ରବଣ ମଣିଷ ଏଯାବତ୍ ଅସଫଳ ରହିଚି।



# କୁଆ ଓ କୋଇଲି କାହାଣୀ

ଆମ ଦେଶରେ ସବୁ କଥାକୁ ନେଇ ରାଜନୀତି ଓ ତଜ୍ଜନିତ ଚର୍ଚ୍ଚା ହୋଇପାରେ । କେବେ ଜାତି, କେବେ ଧର୍ମ, କେବେ ଭାଷା ଆଦି ରାଜନୀତିର ପଶାଖେଳରେ 'ଗୋଟି' ହୋଇଛନ୍ତି । ଶିକ୍ଷା ଅଥବା ଶିକ୍ଷାୟତନ ଏଥିରୁ ମଧ୍ୟ ବାଦ୍ ପଡ଼ିନି । ଏବେ କିଛିଦିନ ହେଲା ରାଜ୍ୟରେ ଗୋଟିଏ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ନେଇ ଉଗ୍ର ଆଞ୍ଚଳିକ ମନୋଭାବ ପ୍ରକାଶ ପାଇଛି । ସଂକୀର୍ଣ୍ଣ ରାଜନୀତିର ଫାଶିଖୁଣ୍ଟ ସାମ୍ନାରେ ଶିକ୍ଷାନୁଷ୍ଠାନଟି ଅସହାୟଟିଏ ପରି ଠିଆ ହୋଇଛି ଯେପରି ! ସନ୍ନିକଟ ତିନିଗୁଟି ନିର୍ବାଚନ ମଣ୍ଡଳୀର ରାଜନୈତିକ ନେତୃବର୍ଗଙ୍କ ପାଇଁ ଏହା ଏପରି ଏକ ସୁନ୍ଦର ପରିସ୍ଥିତି ସୃଷ୍ଟି କରିଛି, ଯାହାକୁ ନେଇ ସେମାନେ ନିଜନିଜର ନିର୍ବାଚନ ମଣ୍ଡଳୀରେ ଆପଣାର ଭାବମୂର୍ତ୍ତି ବଢ଼ାଇବାରେ 'ବ୍ୟସ୍ତ' ଅଛନ୍ତି । ଶିକ୍ଷାନୁଷ୍ଠାନଟି ପାଇଁ ନୁହେଁ, ଆଗାମୀ ନିର୍ବାଚନ ଯୁଦ୍ଧରେ ନିଜକୁ ଯୋଦ୍ଧା ଭାବେ ପ୍ରତିଷ୍ଠିତ କରିବା ଲାଗି ସେମାନଙ୍କ ଆଖିରୁ ନିଦ ଚ୍ୱେରି ହୋଇଯାଇଛି ।

ଆମ ଦେଶରେ ଆଞ୍ଚଳିକତାବାଦ ଆଦୌ ନୂଆ ଘଟଣା ନୁହେଁ । ଏପରିକି ବିଶ୍ୱର ବିଭିନ୍ନ ସ୍ଥାନରେ ପୂର୍ବ-ପଶ୍ଚିମ ଓ ଉତ୍ତର-ଦକ୍ଷିଣ ବିବାଦ ଏବେବି ରହିଛି । ପୂର୍ବ-ପଶ୍ଚିମର ଦ୍ୱନ୍ଦ୍ୱ ନିର୍ଯାତନା ଓ ସ୍ୱାଧୀନତାକୁ ନେଇ ଆରମ୍ଭ ହୋଇଥିବା ବେଳେ ଉତ୍ତର-ଦକ୍ଷିଣ ସମସ୍ୟା ଆରମ୍ଭ ହୋଇଛି ପ୍ରାଚୁର୍ଯ୍ୟ ଓ ଦାରିଦ୍ର୍ୟକୁ ନେଇ । ଭାରତର କଥା ଏଠି ବିଗ୍ରରକୁ ନିଆଯାଇପାରେ । ବିଶିଷ୍ଟ ରାଜନୀତିଜ୍ଞ ଚକ୍ରବର୍ତ୍ତୀ ରାଜଗୋପାଳାଗ୍ୱରୀଙ୍କୁ ପରିହାସ ଛଳରେ ଜଣେ ଭଦ୍ରବ୍ୟକ୍ତି ଏକଦା ପ୍ରଶ୍ନ କରିଥିଲେ: ବିଶ୍ୱର ବିଭିନ୍ନ ଦେଶରେ ଉତ୍ତର ଓ ଦକ୍ଷିଣାଞ୍ଚଳକୁ ନେଇ ଏତେ ବିବାଦ କାହିଁକି ? ପ୍ରକାଶ ଥାଉକି, ସେଇ ସମୟରେ ଭାରତର ଉତ୍ତର ଓ ଦକ୍ଷିଣ ବିବାଦ ବେଶ୍ ସକ୍ରିୟ ଥିଲା । ରାଜଗୋପାଳାଗ୍ୱରୀ ମୃଦୁ ପରିହାସ ଛଳରେ ତାଙ୍କୁ ଉତ୍ତର ଦେଇଥିଲେ: ଏହା ଭୂଗୋଳବିତ୍‌ମାନଙ୍କର ଦୋଷ । ସେମାନେ ସବୁବେଳେ ଦକ୍ଷିଣକୁ ତଳେ ରଖୁଛନ୍ତି (It is the fault of the Geographers. They always put the South at the bottom.) ।

ଉତ୍ତର-ଦକ୍ଷିଣ ଅଥବା ପୂର୍ବ-ପଶ୍ଚିମ ବିବାଦକୁ ଯଦି ମାନବିକ ଅଧିକାର ଦୃଷ୍ଟିରୁ ବିଗ୍ରର କଲେ ଏହାର ମୂଳମଞ୍ଜିକୁ ଗୋଟିଏ ମାତ୍ର ଶବ୍ଦରେ ପ୍ରକାଶ କରାଯାଇପାରିବ । ତା' ହେଉଛି– ଲିବର୍ଟୀ ବା ସ୍ୱାଧୀନତା । ଅବଶ୍ୟ ଏଇ ଶବ୍ଦ ବି ବିବାଦମୁକ୍ତ ନୁହେଁ ଆମ ବିଶ୍ୱରେ । ଇସାଇଆ ବର୍ଲିନ୍‌ଙ୍କ ମତରେ 'ଲିବର୍ଟୀ' ଶବ୍ଦର ଅନ୍ୟୂନ ଦୁଇଶହ ଗୋଟି ସଂଜ୍ଞା ଥିବାବେଳେ ଆବ୍ରାହାମ୍ ଲିଙ୍କନ୍‌ଙ୍କ ମତରେ– ବିଶ୍ୱରେ ଲିବର୍ଟୀର ଗୋଟିଏ ହେଲେ ଉତ୍ତମ ସଂଜ୍ଞା ନାହିଁ ।

ଯଦି ଶିକ୍ଷାର ପ୍ରସାର ବାହାନାରେ ବିଶ୍ୱବିଦ୍ୟାଳୟଟିଏ ପ୍ରତିଷ୍ଠା

କରିବା ପାଇଁ ଆଞ୍ଚଳିକ ନେତୃବର୍ଗ କିଛି ହଟଚମଟ ସୃଷ୍ଟି କରୁଛନ୍ତି, ତେବେ ସେମାନଙ୍କ ବୁଦ୍ଧିମତ୍ତା ସମ୍ପର୍କରେ ୱେଷ୍ଟ ଜର୍ମାନୀର ପୂର୍ବତନ ଗ୍ୱନ୍‌ସେଲର୍ ଡକ୍ଟର୍ କନ୍‌ରାଡ୍ ଅଜେନୁର୍‌ଙ୍କ ଉକ୍ତିଟିକୁ ଦୋହରାଇବା ପ୍ରାସଙ୍ଗିକ ହେବ: "ମଣିଷକୁ ସୃଷ୍ଟି କଲାବେଳେ ଈଶ୍ୱରଙ୍କ ବୁଝାମଣାରେ ଟିକିଏ ଦୁର୍ବଳତା ଥିଲାପରି ଲାଗୁଛି । ମଣିଷକୁ ଟିକିଏ ଅଧିକ ବୁଦ୍ଧିମାନ କରିଦେଇଥିଲେ ଅନ୍ତତଃ କିପରି ବ୍ୟବହାର କରିବା ଉଚିତ ତାହା ସେ ଜାଣିଥା'ନ୍ତା । ନଚେତ୍, ମଣିଷକୁ ଟିକିଏ କମ୍ ଚଲାକ୍ କରିଥିଲେ ତାକୁ ସହଜରେ ଶାସନ କରି ହୋଇଥା'ନ୍ତା ।" ମଣିଷର କୌଣସି ଗୁଣ ନିରଙ୍କୁଶ ନୁହେଁ । 'ସ୍ୱାଧୀନତା' ଅବା ଏଥିରୁ ବାଦ୍ ଯିବ କିପରି ? ଯେଉଁ ନେତାଜଣକ ନିଜ ଅଞ୍ଚଳରେ ବିଶ୍ୱବିଦ୍ୟାଳୟଟିଏ ସ୍ଥାପନର ଡାକରା ଦେଇ ନିଜ ଅଞ୍ଚଳରେ ଲୋକପ୍ରିୟ ହୋଇ ପାରୁଛନ୍ତି, ଅନ୍ୟ ଅଞ୍ଚଳରେ ସେଇ ବ୍ୟକ୍ତି ସବୁଠାରୁ ଘୃଣ୍ୟ ଓ ନିନ୍ଦିତ ବ୍ୟକ୍ତି ଭାବେ ପରିଚିତ ହେଉଛନ୍ତି । "ଜଣକର ସ୍ୱାଧୀନତା ସଂଗ୍ରାମୀ ଆଉ ଜଣଙ୍କର ସନ୍ତ୍ରାସବାଦୀ" (One man's Freedom Fighter is another man's Terrorist.)— ଏହି କଥାଟିର ଯଥାର୍ଥତା ଏଇଠି ପ୍ରତିପାଦିତ ହୋଇଯାଏ ।

ତେବେ, ଏଇ ଘୃଣା ଏବଂ କାତରତାର ଶେଷ କେଉଁଠି ?— ଏହି ପ୍ରଶ୍ନର ଉତ୍ତର ଖୋଜି ପାଇବା ବଡ଼ କଷ୍ଟସାଧ୍ୟ ବ୍ୟାପାର । ସରକାରୀ ନିଷ୍ପତ୍ତିଟି ଏବେ ଯେପରି ଗୋଲକଧନ୍ଦା ଭିତରେ ପଡ଼ିଯାଇଛି, ହୁଏତ କିଛିଦିନ ପରେ ଏଇ ସମସ୍ୟାର ସମାଧାନ ପାଇଁ ଅଦାଲତର ଆଶ୍ରୟ ନେବାକୁ ପଡ଼ିପାରେ । ଅବଶ୍ୟ ଏ ଲେଖକ ଏଥିପାଇଁ ଆଦୌ ବିବ୍ରତ ନୁହେଁ । କାରଣ ଆଜିକାଲି ରାଜନୈତିକ ତଥା ସରକାରୀ ନିଷ୍ପତ୍ତି ପାଇଁ ଆମକୁ ବିଚାରାଳୟକୁ ବ୍ୟବହାର କରିବାକୁ ପଡୁଛି ଏବଂ ଆମେ କରୁଛୁ

ମଧ୍ୟ । ଦେଶର ପରିଚାଳନା ପାଇଁ ସମ୍ବିଧାନସୃଷ୍ଟ ତିନୋଟି ମୁଖ୍ୟବିଭାଗ ଭିତରୁ ବିଚାରବିଭାଗ ଗୋଟିଏ । ରାଜନୀତିର କପଟବଳୟରୁ ଦୂରେଇ ରଖିବା ଲାଗି ଏହାକୁ ସ୍ୱତନ୍ତ୍ର ଆସନ ଦିଆଯାଇଛି । ଆଇନଶୃଙ୍ଖଳା ବଜାୟ ରଖିବାର ଏକଚାଟିଆ ଅଧିକାର ଓ କର୍ତ୍ତବ୍ୟ ହେଉଛି ସରକାରଙ୍କର । ଏଇ ଶୃଙ୍ଖଳା ବଜାୟ ରଖିବା ପାଇଁ ସରକାରଙ୍କୁ କଠୋର ନିଷ୍ପତ୍ତି ନେବାକୁ ପଡ଼େ । ମାତ୍ର ଗୋଟିଏ ଗୋଟିଏ ଦୁର୍ବଳ ସରକାର କଠୋର ନିଷ୍ପତ୍ତି ନେବାରେ ଅକ୍ଷମ ହୋଇ ବିଚାରବିଭାଗ ଆଡ଼କୁ ସମସ୍ୟାଟିକୁ ଠେଲି ଦିଅନ୍ତି । କୁଆର ବସାରେ କୋଇଲିର ଡିମ୍ବଟି ରହିଯାଏ । ଡିମ୍ବ ଫୁଟି ଛୁଆ ହେବା ପରେ ପୁଣି ନିଜ ଗୋଠକୁ ବାହୁଡ଼ିଯାଏ ବିଚରା କୋଇଲିର ଛୁଆଟି । ଏଇ ପ୍ରକ୍ରିୟାଟି ଚାଲିଥାଏ ବାରମ୍ବାର; ଅସଲ ସମସ୍ୟାର ସମାଧାନ ଏହାଦ୍ୱାରା ହୁଏନାହିଁ ।

ଯେଉଁ ଶିକ୍ଷାନୁଷ୍ଠାନ ପାଇଁ ରାଜନୈତିକ ନେତୃବର୍ଗ ଏତେ ତୁମ୍ବି-ତୋଫାନ କରୁଛନ୍ତି, ସେମାନେ ନିଜ ଅଞ୍ଚଳରେ ଥିବା ନିରକ୍ଷର ଲୋକଙ୍କ କଥା ପୂରାପୂରି ଭୁଲିଯାଇଥିବା ଭଳି ମନେହୁଏ । ମୌଳିକ ଶିକ୍ଷା ପ୍ରଦାନ ପାଇଁ ଆମ ସମ୍ବିଧାନର ୪୫ଧାରାରେ ଯେଉଁ ପ୍ରତିଶ୍ରୁତି ଦିଆଯାଇଛି, ତାହା ଏଠି ସେମାନଙ୍କୁ ଆଉ ଥରେ ସ୍ମରଣ କରାଇ ଦେବା ଉଚିତ୍ ହେବ: "ଚଉଦ ବର୍ଷ ବୟସ ହେବାଯାଏଁ ସବୁ ପିଲାଙ୍କୁ ମାଗଣା ଓ ବାଧ୍ୟତାମୂଳକ ଶିକ୍ଷା ପ୍ରଦାନ ପାଇଁ ସମ୍ବିଧାନ ପ୍ରଚଳନର ଦଶ ବର୍ଷ ମଧ୍ୟରେ ରାଜ୍ୟ ପ୍ରଚେଷ୍ଟା କରିବ" (The State shall endeavour to provide, within a period of ten years from the commencement of this constitution, for free and compulsory education for all children until they complete the age of fourteen

years.)। ଏଇ ଲକ୍ଷ୍ୟ ପୂରଣ ଦିଗରେ ଆମେ କେତେଦୂର ସଫଳ ହୋଇଛୁ, ତା'ର ଆତ୍ମସମୀକ୍ଷା କରିବାର ଆବଶ୍ୟକତା ରହିଛି। ଯେଉଁମାନେ ମୌଳିକ ଶିକ୍ଷା ଭୁଲିଯାଇ ଏବେ ବିଶ୍ୱବିଦ୍ୟାଳୟ କଥା ଦୋହରାଉଛନ୍ତି, ସେମାନେ 'ରୁଟି ନମିଳିଲେ କେକ୍ ଖାଅ' ନ୍ୟାୟରେ ଭରସା ରଖନ୍ତି ବୋଲି କହିବାକୁ ହେବ। ତେବେ ଦକ୍ଷିଣ କୋରିଆ ଭଳି ଆର୍ଥିକ ସମୃଦ୍ଧି ଆଣିଥିବା ଦେଶର ଅସଲ ଗୁବିକାଠି ହେଉଛି ସେଠାକାର ସରକାରଙ୍କ 'ଶିକ୍ଷା' ପ୍ରତି ଦେଇଥିବା ଗୁରୁତ୍ୱ। ଅନୁରୂପ ଭାବେ, ବିବିସି ସହ ଏକ ସାକ୍ଷାତକାରରେ ଇଣ୍ଡୋନେସିଆର ସଫଳ କାହାଣୀ ପଛରେ 'ଶିକ୍ଷା' ରହିଛି ବୋଲି ଲି କୁଆଁ ଇଉ କହିଛନ୍ତି। ଏଇ ଦୁଇ ଦେଶର ସାକ୍ଷରତା ହାର ୯୮ ପ୍ରତିଶତ। ୧୯୮୮ ମସିହାରେ ଫ୍ରାନ୍ସର ତତ୍କାଳୀନ ରାଷ୍ଟ୍ରପତି ଶିକ୍ଷାକୁ ସର୍ବାଗ୍ରାଧିକାର (Priority amongst priorities) ଦେବେ ବୋଲି ପ୍ରତିଶ୍ରୁତି ଦେଇ ଦ୍ୱିତୀୟବାର ନିର୍ବାଚିତ ହୋଇଥିଲେ। ସେଇ କାରଣରୁ ଫ୍ରାନ୍ସରେ ପ୍ରଧାନମନ୍ତ୍ରୀଙ୍କ ପରେ – ଅର୍ଥ, ପ୍ରତିରକ୍ଷା, ବୈଦେଶିକ, ଅଥବା ସ୍ୱରାଷ୍ଟ୍ର ବିଭାଗ ମନ୍ତ୍ରୀଙ୍କ ନାମ ନରହି, ଶିକ୍ଷା ବିଭାଗ ମନ୍ତ୍ରୀଙ୍କ ନାମୋଲ୍ଲେଖ କରାଯାଏ। ଶିକ୍ଷାକୁ ସମ୍ମାନ ଦେଉଥିବା ରାଷ୍ଟ୍ର ଓ ସରକାର ପାଇଁ ଏହାଠାରୁ ଭଲ ଉଦାହରଣଟିଏ କ'ଣ ଥାଇପାରେ ?



# ଭଲ ଲୋକ ଓ ଖରାପ ଲୋକ

ବିଶିଷ୍ଟ ଫ୍ରେଞ୍ଚ୍ ଦାର୍ଶନିକ ଓ ଲେଖକ ଆଲବର୍ଟ୍ କାମ୍ୟୁ ୧୯୨୦ ମସିହା ବେଳକୁ ଅସ୍ତିତ୍ୱବାଦ ଦର୍ଶନ ଜରିଆରେ 'ଆବ୍‌ସର୍ଡିଟୀ' ତତ୍ତ୍ୱର ବ୍ୟାଖ୍ୟା କରି ଏହାକୁ ଲୋକପ୍ରିୟ କରାଇଥିଲେ । କାମ୍ୟୁଙ୍କ ପରେ ବିଶ୍ୱଯୁଦ୍ଧୋତ୍ତର ସମୟରେ ଯେଉଁ କେତେଜଣ ବିଶିଷ୍ଟ ନାଟ୍ୟକାର ଏଇ ତତ୍ତ୍ୱର ପରୀକ୍ଷା-ନିରୀକ୍ଷା କରି 'ଆବସର୍ଡ୍ ନାଟକ'କୁ ମାନ୍ୟତା ଦେଲେ, ସେମାନଙ୍କ ଭିତରେ ଥିଲେ ଇଉଜେନ୍ ଆଇଓନେସ୍‌କୋ, ଆର୍ଥର୍ ଆଦାମୋଭ୍ ଓ ସାମୁଏଲ୍ ବେକେଟ୍ । ଏଇ ପରିପ୍ରେକ୍ଷୀରେ ସାମୁଏଲ୍ ବେକେଟ୍‌ଙ୍କ ସୁପରିଚିତ ନାଟକ 'ୱେଟିଙ୍ଗ୍ ଫର୍ ଗୋଦୋଁ'କୁ (Waiting for Godot) ବିଗ୍ଧର କରାଯାଇପାରେ । ନାଟକର ଦୁଇଟି ମୁଖ୍ୟ ଚରିତ୍ର ଅଜଣା ଗୋଦୋଁଙ୍କୁ ଅପେକ୍ଷା କରନ୍ତି । ସେମାନେ ଶେଷ ପର୍ଯ୍ୟନ୍ତ ନିଜ ନିଜର ଆକାଙ୍‌କ୍ଷାର ଅବାସ୍ତବତାକୁ ଉପଲବ୍ଧି କରିବାରେ ସକ୍ଷମ ହୋଇନଥିଲେ ବି ଦର୍ଶକମାନେ ତାହା ଠିକ୍ ବୁଝିପାରନ୍ତି । ଅଜଣା

ଗୋଦୋଁକୁ ଭେଟିବାର ଅବାସ୍ତବ ଅକାଙ୍‌କ୍ଷା ଦ୍ୱାରା ପ୍ରେରିତ ହୋଇ ଅପେକ୍ଷା କରିବା ସମୟରେ ଏଇ ଦୁଇ ଚରିତ୍ର ଛୋଟଛୋଟ କଥାରେ ମୁଣ୍ଡ ଖେଳାଇଛନ୍ତି; ପାର୍ଥିବ ଜଗତର ଘଟଣାମାନଙ୍କୁ ନେଇ ବ୍ୟସ୍ତ ରହିଛନ୍ତି। ମାତ୍ର, ଗୋଦୋଁ ପାଇଁ ସେମାନଙ୍କର 'ଅପେକ୍ଷା'କୁ ନେଇ କୌଣସି ଯୁକ୍ତି ବାଢି ନାହାଁନ୍ତି। ନାଟକଟି ପ୍ରଥମେ ପ୍ରଦର୍ଶିତ ହୋଇଥିଲା ଗୋଟିଏ ଜେଲ୍‌ର ପରିସର ଭିତରେ ଏବଂ ଏହାର ପ୍ରଥମ ଦର୍ଶକ ଥିଲେ କେତେଜଣ କଏଦୀ ମାତ୍ର। ଇତିହାସ କହେ, ସେଇ କଏଦୀମାନେ ହିଁ ଏଇ ନାଟକଟିକୁ ସବୁଠାରୁ ବେଶି ଉପଭୋଗ କରିଥିଲେ। ଅଥଚ, ନାଟକଟିର ତର୍ଜମା ଓ ସମାଲୋଚନା କରିବାରେ ଏଯାବତ୍ ବିଶ୍ୱର ବୁଦ୍ଧିଜୀବୀମାନଙ୍କର ମୋହଭଙ୍ଗ ହୋଇନାହିଁ। କଏଦୀମାନଙ୍କୁ ନେଇ ପରୀକ୍ଷା-ନିରୀକ୍ଷା କରିବା– ଏହାଠାରୁ ସୁନ୍ଦର ଉଦାହରଣ ଆମ ପାଖରେ ନାହିଁ।

ଅବଶ୍ୟ, ଭାରତରେ କଏଦୀମାନଙ୍କୁ ନେଇ ବିଭିନ୍ନ ପରୀକ୍ଷା-ନିରୀକ୍ଷାର ଆରମ୍ଭ କରିଥିଲେ ଲୋକପ୍ରିୟ ତଥା ବିଶିଷ୍ଟ ପୋଲିସ୍ ଅଧିକାରୀ କିରଣ ବେଦୀ। ତାଙ୍କର ସଂସ୍କାରମୂଳକ ପଦକ୍ଷେପ ପରବର୍ତ୍ତୀ ସମୟରେ ବେଶ୍ ଅସୁବିଧାରେ ପକାଇଥିଲା ତାଙ୍କୁ। କଏଦୀମାନଙ୍କୁ ଯୋଗାସନ ଶିକ୍ଷା ଦେବାଠାରୁ ଆରମ୍ଭ କରି ସେମାନଙ୍କ ମାନସିକ ପରିବର୍ତ୍ତନ ପାଇଁ ବିବିଧ କାର୍ଯ୍ୟକ୍ରମ ଆରମ୍ଭ କରାଇ ଦିଲ୍ଲୀର ତିହାର୍ ଜେଲ୍‌ରେ ସେ ଖୁବ୍ ଲୋକପ୍ରିୟ ହୋଇପାରିଥିଲେ।

ଏବେ ନିକଟରେ ପଶ୍ଚିମବଙ୍ଗର କେତେକ କଏଦୀଙ୍କୁ ଜୈନ ସନ୍ନ୍ୟାସିନୀଙ୍କ କ୍ରମାଗତ ପ୍ରବଚନ ଖୁବ୍ ପ୍ରଭାବିତ କରିଛି ବୋଲି ଖବର ପ୍ରକାଶ ପାଇଛି। ଅତୀତରେ ଆନ୍ଧ୍ର ପ୍ରଦେଶର କିଛି କଏଦୀ ସ୍ନାତକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଦେଶରେ ଚହଳ ସୃଷ୍ଟି ମଧ୍ୟ କରିଥିଲେ। ଜେଲ୍‌ରୁ ମୁକ୍ତି ପରେ ସେମାନେ ନିଜେ ନିଜକୁ ପ୍ରତିଷ୍ଠା କରିବାରେ

ସକ୍ଷମ ହୋଇପାରିବେ ବୋଲି ଆଶା କରାଯାଏ । ପ୍ରତିଦିନ ଖବରକାଗଜରେ ପ୍ରକାଶ ପାଏ ଅସାମାଜିକ ବ୍ୟକ୍ତି ଓ ସେମାନଙ୍କ କାର୍ଯ୍ୟକଳାପ ବିରୁଦ୍ଧରେ ବିକ୍ଷୋଦ୍‌ଗାର । କିନ୍ତୁ, ଏଇ ଅସାମାଜିକତା କିପରି ରୋକି ହେବ, ସେଥିନେଇ ଏମାନଙ୍କ ପାଖରେ କୌଣସି ଖସଡ଼ା ନଥାଏ । ଏମାନେ ଏଇ ବିଷବୃକ୍ଷର ଶାଖା ପ୍ରଶାଖା କାଟି ଦେବାକୁ ନିର୍ଦ୍ଦେଶ ଦିଅନ୍ତି; ମାତ୍ର ଭୁଲିଯା'ନ୍ତି ଯେ, ଏହାର ଚେର ମାଟିତଳେ ଅନେକ ଭିତରକୁ ଗ୍ଲଲିଯାଇଛି । ପୁଣି କିଛିଦିନ ପରେ ସେଇ ଶାଖା ପ୍ରଶାଖାରେ ପତ୍ର କଅଁଳେ ଓ ଫୁଲ ଧରେ । ବେଳେବେଳେ ମନେ ହୁଏ, ଆମର ଅପରାଧପ୍ରବଣ ବ୍ୟକ୍ତିମାନେ ନ ଥିଲେ ଆମ ରାଜନୈତିକ ନେତୃବୃନ୍ଦଙ୍କୁ ଚିହ୍ନିବାରେ ବଡ଼କଷ୍ଟ ହୋଇପଡ଼ନ୍ତା । ସେମାନେ ମନୋହରପୁର କିମ୍ବା ଜେହାନାବାଦକୁ ସମବେଦନା ଜଣାଇବା ପାଇଁ ନ ଗଲେ ଟେଲିଭିଜନ୍‌ରେ ସେମାନଙ୍କ ମୁଖଦର୍ଶନର ସୁଯୋଗ ମିଳନ୍ତା କିପରି ? ହୁଏତ ସେଇ କାରଣରୁ ଅନେକ ଅଭିଜ୍ଞ ତଥା କୁଶଳୀ ରାଜନୀତିଜ୍ଞ ଭିକଥାଳ ଧରି ଏବେ କୁଖ୍ୟାତ ଅପରାଧୀଙ୍କ ପାଖରେ ଠିଆ ହେଉଛନ୍ତି । ନିକଟରେ ଜଣେ ରାଜନୈତିକ ନେତାଙ୍କର ଜେଲ୍‌ରେ ରହିବା (ଯାହାକୁ ଦୀର୍ଘ ପିକ୍‌ନିକ୍ କୁହାଯାଇପାରେ) ଓ ପରେପରେ କଏଦୀମାନଙ୍କୁ ନେଇ ପିକ୍‌ନିକ୍ ଯିବା ଲାଗି କୋର୍ଟ୍‌ରେ କରିଥିବା ଆବେଦନ ଦେଶରେ ବେଶ୍ ଚର୍ଚ୍ଚାର ବିଷୟ ହୋଇଥିଲା । ପରିହାସ ଛଳରେ ବିଗ୍ଭରପତି ମହୋଦୟ ଉକ୍ତ ନେତା ଭବିଷ୍ୟତରେ ଏପରି ଆଇନ ତିଆରି କରିବା ଲାଗି ପରାମର୍ଶ ଦେଇଥିଲେ । କଏଦୀମାନଙ୍କ ପ୍ରତି ଦରଦ ଅପେକ୍ଷା ଅବଶ୍ୟ ନେତାଙ୍କର ଦେଖାଣିଆ ମନୋଭାବ ବେଶି ପ୍ରକାଶ ପାଇଥିଲା ।

କଏଦୀଟିଏ ହେବାର ସ୍ୱପ୍ନ କେହି କେବେ ଦେଖେ ନାହିଁ । ଅବଶ୍ୟ ଏଠି ରାଜନୈତିକ ନେତାମାନଙ୍କ କଥା ବିଗ୍ଭର କରାଯାଉନାହିଁ । ସମୟ ଓ ସମାଜର କ୍ରୂରତା ହିଁ ଜଣକୁ କଏଦୀ କରାଇଥାଏ । ତା'ର

ଦୃଷ୍ଟାନ୍ତ କେବଳ ସମସାମୟିକ ସମାଜରେ ନୁହେଁ ଆମର ପୌରାଣିକ ଉପାଖ୍ୟାନମାନଙ୍କରେ ମଧ୍ୟ ରହିଛି । ନିଜର ଭଉଣୀ ଓ ଭିଣୋଇଙ୍କୁ (ଦେବକୀ ଓ ବସୁଦେବ) ବନ୍ଦୀଶାଳାରେ ରଖିଥିବା ଦୁଷ୍ଟରାଜା କଂସ କଥା ଉଦାହରଣ ସ୍ୱରୂପ ନିଆଯାଇପାରେ । ଦେବକୀ ଓ ବସୁଦେବଙ୍କ ଅସହାୟ ଆର୍ତ୍ତନାଦରୁ ହିଁ ଜନ୍ମ ନେଇଥିଲେ ସତ୍ୟ ଓ ବିପ୍ଳବର ସ୍ଫୁଲିଙ୍ଗ, ଭଗବାନ ଶ୍ରୀକୃଷ୍ଣ । କିନ୍ତୁ ସେମାନଙ୍କ ଅପରାଧ କ'ଣ ଥିଲା, ଯେଉଁଥି-ପାଇଁ ଅନେକ ଦୁଃଖର ବତାସ, ଯନ୍ତ୍ରଣାର ଶିକୁଳି ଏବଂ ଭୟର ନଦୀ ପାର୍ କରିବା ଲାଗି ସ୍ୱୟଂ ଭଗବାନ ନିଜେ ଆସି ସେଥିରୁ ମୁକ୍ତି ଦେଲେ ? କହିବାର ମୂଳକଥା ହେଉଛି, କଏଦୀଟିଏ କଏଦୀ ନୁହେଁ ସାରାଜୀବନ । ଗଳ୍ପଟିଏ ମନେ ପଡୁଛି । ଏକଦା ଜଣେ ବିଶିଷ୍ଟ ଚିତ୍ରକର ଅର୍ଥ ଓ ଯଶର ଶୀର୍ଷରେ ପହଞ୍ଚିବା ପରେ ମନସ୍ଥ କଲେ ଯେ, ଆଉ ମାତ୍ର ଦୁଇଟି ଚିତ୍ର ଆଙ୍କିବା ପରେ ଚିତ୍ର ଆଙ୍କିବା ବୃତ୍ତିରୁ ସନ୍ନ୍ୟାସ ନେବେ । 'ପୋର୍ଟ୍ରେଟ୍' ଆଙ୍କିବା ସେସମୟର ଚିତ୍ରକଳାର ଏକ ବିଶେଷ ଅଙ୍ଗଭାବେ ପ୍ରସିଦ୍ଧି ଲାଭ କରିଥିଲା । ତେଣୁ ସେ ସିଦ୍ଧାନ୍ତ ନେଲେ, ଗୋଟିଏ ଭଲ ଲୋକ ଓ ଗୋଟିଏ ଖରାପ ଲୋକର ଚିତ୍ର ଅଙ୍କନ କରିବେ । ଶିଳ୍ପୀ ମହୋଦୟ ଭଲ ଲୋକଟିଏ ଖୋଜିବାକୁ ଯାଇ ଗୋଟିଏ ସୁନ୍ଦର ଓ ନିଷ୍ପାପ ଶିଶୁର (ଅମୂଲ ସ୍ପେ ବେବୀ ହୋଇପାରେ !) ଚିତ୍ର ଅଙ୍କନ କଲେ । ଏଥର ପାଳି ପଡ଼ିଲା ଖରାପ ଲୋକର । ଶିଳ୍ପୀ ମହୋଦୟ ଦିନ ରାତି ଅନ୍ୱେଷଣ କଲେ । ପ୍ରତିଥର କୌଣସି ଖରାପ ଲୋକଟିଏ ପାଇଲେ ବି ତାଙ୍କ ମନ ମାନୁ ନଥାଏ । ଦୀର୍ଘ ପଚିଶବର୍ଷ ଯାଏ ଘୂରି ବୁଲିଲେ ସେ । ମନ ଓ ଶରୀର ଉଭୟ କ୍ଳାନ୍ତ ହୋଇଯାଇଥାଏ । ଦିନେ ଅଳସ ଅପରାହ୍ନରେ ଗୋଟିଏ ଜେଲ୍ ସାମ୍ନାରେ କଲ୍‌ଭଟ୍ ପାଖରେ ବସିଥାନ୍ତି ଶିଳ୍ପୀ । ହଠାତ୍ ଜେଲ୍‌ର ଫାଟକ ଖୋଲିବାର ଶବ୍ଦ ଶୁଣି ଶିଳ୍ପୀ ସେ ଦିଗକୁ ଚାହିଁଲେ । ଅନତିଦୂରରେ ଜଣେ ବଳିଷ୍ଠ ଯୁବକ,

ମୁହଁରେ ଅଯତ୍ନ ଦାଢ଼ି, ଆଖିରେ ପ୍ରତିହିଂସାର ବହ୍ନି ଓ ମନରେ ଅବଦମିତ ଘୃଣା ଉକୁଟି ଉଠୁଛି । ଶିଳ୍ପୀ ତତ୍‌କ୍ଷଣାତ୍ ଯୁବକଟି ପାଖକୁ ଗଲେ ଓ ତାଙ୍କୁ ଅନୁଧାବନ କରିବା ଲାଗି ନିବେଦନ କଲେ । ଅବଶ୍ୟ ଯୁବକଟିକୁ ତା'ର ମନ ମୁତାବକ ସୁରାପାନର ବ୍ୟବସ୍ଥା କରିବେ ବୋଲି ଶିଳ୍ପୀ ପ୍ରତିଶ୍ରୁତି ଦେଇଥିଲେ । ତାହା ହିଁ ହେଲା । ଯୁବକଟିକୁ ସୁରାପାତ୍ର ଧରାଇ ଶିଳ୍ପୀ ଏଥର କାନ୍‌ଭାସ୍‌ରେ ତା'ର ଚିତ୍ର ଅଙ୍କନ କରିବା ଲାଗି ତୂଳିକା ଚାଳନା କଲେ ।

"କ'ଣ ପାଇଁ ମୋ'ର ଚିତ୍ର ଆଙ୍କୁଛ ?" ଯୁବକ ପଚାରିଲା

"ତୁ ଗୋଟିଏ ଖରାପ ଲୋକ, ସେଇଥିପାଇଁ"— ଶିଳ୍ପୀ କହିଲେ । ଯୁବକଟି ଶିଳ୍ପୀଙ୍କ କଥା ବୁଝି ପାରିଲା ନାହିଁ । ତେଣୁ ଶିଳ୍ପୀ ସବୁକଥା ବଖାଣିଲେ । ତାଙ୍କ କଥା ଶୁଣି ଯୁବକଟି ଆଶ୍ଚର୍ଯ୍ୟ ହେଲା ଏବଂ ଶିଳ୍ପୀ ଆଙ୍କିଥିବା ଭଲ ଲୋକଟିର ଛବି ଦେଖିବାକୁ ଚାହିଁଲା । ଅନୁରୋଧ ରଖି ଶିଳ୍ପୀ ଯୁବକଟିକୁ ସେଇ ଛବିଟି ଦେଖାଇବା ପରେ ଯୁବକଟି ଆଖିରୁ ଧାରଧାର ଲୁହ ବହିବାକୁ ଲାଗିଲା । କାରଣ, ସେଇ ଛବିଟିର ନିଷ୍ପାପ ଶିଛଡଟଡଅଠଉ ।କଧଣଧଡନଢ଼ଧ ।ଣଧଁ; ନଧଧଡାଜଧ ।ପଇ ଯୁବକ ! ସବୁ ମଣିଷ ଭିତରେ ଭଗବାନ ଓ ସଇତାନ ଦୁହେଁ ବାସ କରୁଛନ୍ତି ବୋଲି କହିବା ଏ ଗଳ୍ପଟିର ଉଦ୍ଦେଶ୍ୟ । ସେଇଥିପାଇଁ ମାର୍କ୍ ଟ୍ୱାଇନ୍ କହିଥିଲେ—"ସବୁ ମଣିଷ ଗୋଟିଏ ଗୋଟିଏ ଜହ୍ନ, ଯାହାର କେବଳ ପଛ ପାଖଟି ଅନ୍ଧାର । "

ଏଇ ଅନ୍ଧାରକୁ ଆଲୋକିତ କରିବାରେ ହିଁ ଜୀବନର ସକଳ ସାର୍ଥକତା ।



# ଘରବାହୁଡ଼ା

ନିକଟରେ ଭାରତ ସରକାର 'ସାଟାନିକ୍ ଭର୍ସେସ୍'ର ବିବାଦୀୟ ଲେଖକ ତଥା ବିଶିଷ୍ଟ ଔପନ୍ୟାସିକ ସଲ୍‌ମାନ୍ ରଶ୍‌ଦୀଙ୍କୁ ଭାରତକୁ ଆସିବା ଲାଗି ଭିସା ଦେବା ନଷ୍ପତ୍ତି କରିଛନ୍ତି । ସେଥିନେଇ ଭାରତରେ ଓ ବିଦେଶରେ ଭାରତର ଏଇ ନିଷ୍ପତ୍ତିକୁ ସମାଲୋଚନା କରାଯାଉଥିବାର ଖବର ମିଳିଛି । ପ୍ରକାଶ ଥାଉକି, ଠିକ୍ ଦଶବର୍ଷ ତଳେ ୧୯୮୯ ଫେବ୍ରୁଆରୀ ୧୪ ଦିନ ଇରାନ୍‌ର ତତ୍‌କାଳୀନ ଧାର୍ମିକ ରାଷ୍ଟ୍ରନେତା ଆୟାତୋଲ୍ଲା ରୁହେଲ୍ଲା ଖୋମିନୀ, ରଶ୍‌ଦୀଙ୍କ ପ୍ରତି 'ଫତ୍‌ୱା' ବା 'ମୃତ୍ୟୁଦଣ୍ଡ' ଜାରି କରିଥିଲେ ତାଙ୍କର ଏଇ ବିବାଦୀୟ ପୁସ୍ତକ ପାଇଁ । ଫେବ୍ରୁଆରୀ ୧୪— ଏଇ ତାରିଖଟି ବିଶ୍ୱର ବିଭିନ୍ନ ଦେଶରେ ପ୍ରେମୀଯୁଗଳ ଦିବସ ବା 'ଭାଲେନ୍‌ଟାଇନ୍ ଡେ' ଭାବେ ପାଳିତ ହୋଇଥାଏ । ମାତ୍ର ରଶ୍‌ଦୀଙ୍କ ସୁଖ-ଆକାଶରେ କଳାବାଦଲର ଆବିର୍ଭାବ ଘଟିଥିଲା ସେଇଦିନ । ସବୁଠୁ ପରିତାପର ବିଷୟ, ରଶ୍‌ଦୀଙ୍କ ବିବାଦୀୟ

ପୁସ୍ତକକୁ ପ୍ରଥମେ ନିଷିଦ୍ଧ କରିବା ନିଷ୍ପତ୍ତି ନେଇଥିଲେ ଭାରତ ସରକାର । ଆଜି 'ଭିସା' ପ୍ରଦାନ କରି ସେ ଭୁଲର ଆମେ ପ୍ରାୟଶ୍ଚିତ କରୁଛୁ ମାତ୍ର । ଦଶବର୍ଷ ହେଲା ବ୍ରିଟିଶ ସରକାରଙ୍କ ଦ୍ୱାରା ପ୍ରଦତ୍ତ କଡ଼ା ନିରାପତ୍ତା ବ୍ୟବସ୍ଥା ଭିତରେ ନିସଙ୍ଗ ଜୀବନ କାଟୁଥିବା ଏଇ ଭାରତୀୟ ବଂଶୋଦ୍ଭବ ଲେଖକ ଏହା ଭିତରେ ଲେଖିଛନ୍ତି 'ଇଷ୍ଟ, ୱେଷ୍ଟ' ଗଳ୍ପ ପୁସ୍ତକ ଏବଂ 'ହାରୁନ୍ ଆଣ୍ଡ୍ ସୀ ଅଫ୍ ଷ୍ଟୋରୀଜ୍' ଓ 'ମୁର୍‌ସ୍ ଲାଷ୍ଟ ସାଏ' ଭଳି ଉଚ୍ଚକୋଟୀର ଉପନ୍ୟାସ । ଶେଷ ଉପନ୍ୟାସଟିରେ ମଧ୍ୟ ସେ ମହାରାଷ୍ଟ୍ରର ଶିବସେନା ମୁଖ୍ୟ ବାଲାସାହେବ୍ ଠାକ୍‌ରେଙ୍କୁ ବ୍ୟଙ୍ଗ କରି ଚିତ୍ରିତ କରିଥିବାରୁ ଏଇ ଉପନ୍ୟାସଟି ମହାରାଷ୍ଟ୍ରରେ ବିକ୍ରୀ-ନିଷିଦ୍ଧ ହୋଇଛି ।

ଅଥଚ ଅନ୍ତର୍ଜାତୀୟ ଖ୍ୟାତିସମ୍ପନ୍ନ ଏଇ ଲେଖକଙ୍କୁ ଧର୍ମଗୁରୁମାନେ ଖୁବ୍ ନୀଚ ବ୍ୟକ୍ତିର ଆଖ୍ୟା ଦେଇଛନ୍ତି । ସେଇ ଦୁଃଖରେ ସେ ଏକଦା କହିଥିଲେ– ''ମୋ'ର ଏଇ ନିସଙ୍ଗ ଜୀବନର କି ମୂଲ୍ୟ ଅଛି ? ଗଳ୍ପ ମାଧ୍ୟମରେ ବିଶ୍ୱ ସହ ଯୁକ୍ତିତର୍କ କରୁଥିବା ଲେଖକକୁ ତୁମେ କେଉଁ ମୂଲ୍ୟ ଓ ମାନ୍ୟତା ଦେଉଛ ତା'ର ନିଷ୍ପତ୍ତି କରିବା ଉଚିତ୍ ।''

ସତ୍ୟ ପ୍ରକାଶ ପାଇଁ ସବୁକାଳରେ ଲେଖକମାନଙ୍କୁ 'ମୂଲ୍ୟ' ଦେବାକୁ ପଡ଼ିଛି– ବିଶ୍ୱର ଅଧିକାଂଶ ସ୍ଥାନରେ ଏପରି ଘଟଣା ଘଟିଯାଇଛି । ଏକଦା ଇଜୀପ୍ଟର ବ୍ୟଙ୍ଗଲେଖକ ଫରାଗ୍ ଫଉଦା କହିଥିଲେ– ''ବିକୃତ ହୋଇଥିବା ମହାନ୍ ସତ୍ୟ ପାଇଁ, ହରାଇଥିବା ମହାନ୍ ପରମ୍ପରା ପାଇଁ ଏବଂ ପାଶୋରି ଦେଇଥିବା ଏକ ମହାନ୍ ଇତିହାସ ପାଇଁ, ଆସନ୍ତୁ ବିଳାପ କରିବା'' (Let us weep for a great truth that has been distorted, for a great tradition that has been lost and a great history that has been forgotten) । ଏଇ ମହାନ

ପ୍ରବକ୍ତାଙ୍କୁ ଗୁଳିକରି ହତ୍ୟା କରାଗଲା । ମିଶରର ପ୍ରମୁଖ ଔପନ୍ୟାସିକା ନବାଲ୍ ଏଲ୍ ସାଦାୱିଙ୍କ (Nawal el Saadawi) ପ୍ରକାଶ କରିବାର ସ୍ୱାଧୀନତାକୁ ମଧ୍ୟ ସଙ୍କୁଚିତ କରାଯାଇଥିଲା । କୁଏତ୍ ଉପରେ ଇରାକ୍‌ର ଆକ୍ରମଣକୁ "କୁଏତ୍‌ର ପାପ ପାଇଁ ଈଶ୍ୱରଙ୍କ କ୍ରୋଧ ବୋଲି" ଇମାମ୍ ଅଭିହିତ କରିଥିଲେ । ଏହାର ସମାଲୋଚନା କରିଥିବାରୁ କୁଏତ୍‌ର ସାମ୍ବାଦିକ ଫଉଆଜ୍ ଅଲ୍ ହାସିମ୍‌ଙ୍କୁ କାରାବରଣ କରିବାକୁ ପଡ଼ିଥିଲା । ଏପରିକି ଏହି ବିକୃତ ଚିନ୍ତାଧାରୀଙ୍କ କବଳରୁ ବିଶିଷ୍ଟ ଲେଖକ ତଥା ନୋବେଲ୍ ପୁରସ୍କାର ବିଜେତା ନଗୁଇବ୍ ମେହେଫୁଜ୍‌ଙ୍କୁ ମଧ୍ୟ ନିଷ୍କୃତି ମିଳି ନ ଥିଲା ।

ଏ ସବୁର ଉଦାହରଣ ପାଇଁ ଆମକୁ ବେଶି ବାଟ ଯିବାର ଆବଶ୍ୟକତା ନାହିଁ । ମଧ୍ୟଯୁଗୀୟ ବୈଷ୍ଣବ ତତ୍ତ୍ୱର ପ୍ରଗ୍ୱରକ ତଥା ଭକ୍ତକବି ବଳରାମ ଦାସଙ୍କୁ ଯେଉଁ ସାମାଜିକ ତିରସ୍କାର ତଥା ଲାଞ୍ଛନା ମିଳିଥିଲା, ସେଇ ଅଭିମାନ ବା ଅପମାନବୋଧରୁ ସୃଷ୍ଟି ହୋଇଥିଲା କାଳଜୟୀ କୃତି 'ଭାବ ସମୁଦ୍ର' । ଅବଶ୍ୟ ଏଇ ଲାଞ୍ଛନା ପଛରେ ଯେଉଁ କାହାଣୀଟି ଲୁଚି ରହିଥିଲା ତା' ଏଇପରି– ଏକଦା ଗୁଣ୍ଡିଚ୍ଚା ରଥଯାତ୍ରାଦିନ ଭକ୍ତକବି ବଳରାମ ଦାସ ଶ୍ରୀମନ୍ଦିର ସନ୍ନିକଟ ବୁଡ଼ଙ୍ଗ ସାହିସ୍ଥ ବେଶ୍ୟାପଡ଼ାରେ ଗ୍ୱରୁ ମାହାରୀ ନାମ୍ନୀ ମହିଳା ସହ ରସକେଳିରେ ମଗ୍ନ ଥିଲେ । ଠିକ୍ ଏତିକିବେଳେ ନନ୍ଦିଘୋଷରେ ଡାହୁକର ସ୍ୱର ସହ ଘଣ୍ଟମର୍ଦ୍ଦଳ ଧ୍ୱନି ଶୁଣି ଭକ୍ତକବି ମାହାରୀର ଶେଯରୁ ତତ୍‌କ୍ଷଣାତ୍ ଉଠି ବଡ଼ଦାଣ୍ଡକୁ ଆସିଥିଲେ । ମାତ୍ର, ତାଙ୍କ ଚିବୁକରେ ଲାଗି ରହିଥିଲା ତାମ୍ବୁଳ ଓ ଦନ୍ତ ଚିହ୍ନ । ଏହା ଫଳରେ ରଥାରୂଢ଼ ପଣ୍ଡା-ପଢ଼ିଆରୀଙ୍କ କ୍ରୋଧର ଶିକାର ହୋଇ ସେଠାରୁ ସେ ବିତାଡ଼ିତ ହୋଇଥିଲେ । ଠିକ୍ ସେହିପରି 'ରସ କଲ୍ଲୋଳ'ର ପ୍ରଣେତା ଦୀନକୃଷ୍ଣ ଦାସଙ୍କ କଥା ନିଆଯାଇପାରେ । ତତ୍‌କାଳୀନ ରାଜନ୍ୟବର୍ଗ ନିଜ ନାମରେ କବିତା ଭଣିତ କରିବା ଲାଗି

ଯେତେବେଳେ ଦୀନକୃଷ୍ଣଙ୍କୁ ଅନୁରୋଧ କରନ୍ତି, ଦୀନକୃଷ୍ଣ ସେଇ ଅନୁରୋଧକୁ ଖାଲି ପ୍ରତ୍ୟାଖ୍ୟାନ କରିନାହାନ୍ତି, ବରଂ କବିମାନଙ୍କୁ ସତର୍କବାଣୀ ଶୁଣାଇଛନ୍ତି—

''କବି ଯା' କରେ ମୂର୍ଖକୁ ସ୍ତୁତି,
ସେଥିରୁ ନାହିଁ ବଳି ବିପତ୍ତି,
ଏଥିକୁ ପ୍ରତି ଛାତିରେ କାତି ମାରିବା ଭଲ ହେ।''

ଦୀନକୃଷ୍ଣଙ୍କୁ ଏଥିପାଇଁ ଅବଶ୍ୟ ମୂଲ୍ୟ ଦେବାକୁ ପଡ଼ିଥିଲା। ପୁରୀ ସହରରୁ ତାଙ୍କୁ ବିତାଡ଼ିତ କରିବା ଫଳରେ ସେ ସହର ଉପକଣ୍ଠସ୍ଥ ଏକ ସ୍ଥାନରେ କୁଷ୍ଠରୋଗୀଙ୍କ ଗହଣରେ ଜୀବନଯାପନ କରି ଦୁରାରୋଗ୍ୟ କୁଷ୍ଠଗ୍ରସ୍ତ ହୋଇଥିଲେ ସିନା ଚାଟୁକାର ହେବାକୁ ପସନ୍ଦ କରି ନଥିଲେ।

କିଛି ବର୍ଷ ତଳେ ଅବିଭକ୍ତ ସୋଭିଏତ୍ ରୁଷିଆର ବିଶିଷ୍ଟ ଲେଖକ ଆଲେକ୍‌ଜାଣ୍ଡାର୍ ସୋଲ୍‌ଝେନିତ୍‌ସିନ୍‌ଙ୍କୁ 'ଗୁଲାଗ୍ ଆର୍କିପେଲାଗୋ' ବହି ପାଇଁ ନୋବେଲ୍ ପୁରସ୍କାର ଦିଆଯିବାରୁ ସେଥିରେ ଉତ୍‌କ୍ଷିପ୍ତ ହୋଇ ତତ୍‌କାଳୀନ ସୋଭିଏତ୍ ସରକାର ତାଙ୍କୁ ଦେଶରୁ ନିର୍ବାସିତ ମଧ୍ୟ କରିଥିଲେ। କାରଣ ସୋଲ୍‌ଝେନିତ୍‌ସିନ୍ ତତ୍‌କାଳୀନ ସରକାରର ନୀତି ଓ ଆଦର୍ଶକୁ ଖୋଲାଖୋଲି ସମାଲୋଚନା କରିବା ସହ ଲେଖନୀ-ସ୍ୱାଧୀନତାରେ କୌଣସି ହସ୍ତକ୍ଷେପକୁ ବରଦାସ୍ତ କରିନଥିଲେ। ମାତ୍ର ଆଜି ତାଙ୍କର ଭବିଷ୍ୟତବାଣୀ ସତ ହେଇଛି। ସୋଭିଏତ୍ ରୁସିଆ ଭାଙ୍ଗି ଖଣ୍ଡଖଣ୍ଡ ହୋଇଯିବା ସହ ଲେଖକଙ୍କ ନିର୍ବାସନର ଅନ୍ତ ହୋଇଛି।

ବଙ୍ଗଳାଦେଶର ଲେଖିକା ତସ୍‌ଲିମା ନସ୍‌ରିନ୍ ଆମ ପାଖରେ ଏବେ ସଦ୍ୟତମ ଉଦାହରଣ। ଭାରତର ବାବ୍‌ରୀ ମସ୍‌ଜିଦ୍ ଭାଙ୍ଗିବା ଦିନ ବାଙ୍ଗ୍‌ଲାଦେଶ୍‌ରେ ବାସ କରୁଥିବା ହିନ୍ଦୁମାନଙ୍କୁ କିପରି ହତ୍ୟା

କରାଯାଇଥିଲା ଓ ହିନ୍ଦୁ ମନ୍ଦିର ସବୁକୁ କିପରି ମୌଳବାଦୀମାନଙ୍କ ଦ୍ୱାରା ନଷ୍ଟ କରିଦିଆଯାଇଥିଲା ତାହା ହିଁ ସେ ଲେଖିଛନ୍ତି 'ଲଜ୍ଜା' ଉପନ୍ୟାସରେ । ତେଣୁ ବାଙ୍ଗ୍ଲାଦେଶ୍‌ର ମୌଳବାଦୀଙ୍କ କ୍ରୋଧର ଶିକାର ହୋଇ କିଛିବର୍ଷ ଦେଶାନ୍ତର ହେବା ପରେ ଏବେ ନିଜ ଦେଶରେ ଜୀବନକୁ ବିପନ୍ନ କରି ବୁର୍ଖାର ଅନ୍ତରାଳରେ ସେ ଘୂରିବୁଲୁଛନ୍ତି । ଅବଶ୍ୟ ତାଙ୍କର ସ୍ୱଦେଶ ପ୍ରତ୍ୟାବର୍ତ୍ତନର ମୁଖ୍ୟ କାରଣ ହେଉଛି କର୍କଟ ରୋଗାକ୍ରାନ୍ତ ତାଙ୍କ ମାଆଙ୍କର ଦୀର୍ଘ ଅସୁସ୍ଥତା । ଏସବୁ ଉଦାହରଣ ଦେବାର ଏକମାତ୍ର ଉଦ୍ଦେଶ୍ୟ ହେଉଛି, କୌଣସି କାଳରେ ସତ୍ୟ ପ୍ରକାଶ କରୁଥିବା ଲେଖକଙ୍କୁ ତତ୍‌କାଳୀନ ସରକାର ବା ସମାଜ ସହଜରେ ଗ୍ରହଣ କରିପାରିନି । ସକ୍ରେଟିସ୍‌ଙ୍କର ମଧ୍ୟ ସେଇ ଦୁର୍ଦ୍ଦଶା ହୋଇଥିଲା । ଶେଷରେ ତାଙ୍କୁ ବିଷପାନ କରିବାକୁ ବାଧ୍ୟ କରାଯାଇଥିଲା ।

ଏଥର ସଲ୍‌ମାନ୍‌ଙ୍କ ଘରବାହୁଡ଼ା କଥା ଦେଖାଯାଉ । ହିମାଚଳ ପ୍ରଦେଶରେ ଥିବା ପୈତୃକ ଘରଟିକୁ ଗୋଟିଏ ଆର୍ଟ୍ ମ୍ୟୁଜିୟମ୍ କରିବା ଲାଗି ସେ ଆଗ୍ରହୀ । ଭାରତକୁ ଆସିବା ପଛରେ ତାଙ୍କର ଏଇ ଉଦ୍ଦେଶ୍ୟ ! ମୋଟାମୋଟି କହିବାକୁ ଗଲେ, ତତ୍‌କାଳୀନ ଆହ୍ୱାନକୁ ମୁକାବିଲା କରିବା ଲାଗି ଏଇ ଲେଖକମାନେ ନିଜ ଜୀବନକୁ ମଧ୍ୟ ବିପନ୍ନ କରିଦେବାରେ କୁଣ୍ଠାପ୍ରକାଶ କରନ୍ତି ନାହିଁ । ସେମାନେ ସମାଜ ଓ ସଭ୍ୟତାର ତ୍ରାଣକର୍ତ୍ତା । ଯଥାର୍ଥରେ ବିଶିଷ୍ଟ ଐତିହାସିକ ଟଏନ୍‌ବୀ ଥରେ କହିଥିଲେଃ "ଗୋଟାଏ ସଭ୍ୟତା ଯେତେଦିନଯାଏ ତତ୍‌କାଳୀନ ସମୟର ଆହ୍ୱାନକୁ ଠିକ୍ ଭାବେ ମୁକାବିଲା କରିପାରିଥାଏ ସେତେଦିନଯାଏ ତାହା ତିଷ୍ଠି ରହେ ।" (A civilisation survives only so long as it makes adequate response to challenges of its time.)



# ସୀତାଙ୍କ ପିକ୍‌ନିକ୍

ଏଇ ଆଲୋଚନାର ଶୀର୍ଷକ ବାଛିବାରେ କଳା-ସମାଲୋଚକ ଅମର ସାମଲ୍‌ଙ୍କ ଯୋଗଦାନ ପାଇଁ ମୁଁ ଧନ୍ୟ। କେତେଗୁଡ଼ିଏ ଚିନ୍ତାଦ୍ୟୋତକ ପ୍ରବନ୍ଧ ମାଧ୍ୟମରେ ଓଡ଼ିଶୀ ନୃତ୍ୟର ସାମ୍ପ୍ରତିକ ବିଲକ୍ଷଣକୁ ପ୍ରକାଶ କରିବାରେ ବ୍ରତୀ ହୋଇଛନ୍ତି ଶ୍ରୀ ସାମଲ୍। ୧୯୯୪ ମସିହାରୁ ଏ ଲେଖକ ତାଙ୍କର ଓଡ଼ିଶୀ ସମ୍ପର୍କୀୟ ଆଲୋଚନା ପଢ଼ି ମର୍ମାହତ ହୋଇଆସିଛି। ତେବେ ନିକଟରେ ପ୍ରକାଶିତ (ଦୈନିକ ଅନୁପମ ଭାରତ, ୨୫.୧୨.୯୮) "ପରିଚୟ ସଙ୍କଟରେ ପଡ଼ିବାକୁ ଯାଉଛି ଓଡ଼ିଶୀ ନୃତ୍ୟ !" ପଢ଼ିବା ପରେ ଏ ଆଲୋଚନା।

ତାଙ୍କର ଅନେକ ଅଭିଯୋଗ ଭିତରୁ ମୁଖ୍ୟ କେତୋଟି ହେଲା:

(କ) ପରୀକ୍ଷା-ନିରୀକ୍ଷା ନାମରେ ଓଡ଼ିଶୀ ନୃତ୍ୟର ବିକୃତିକରଣ।

(ଖ) ବ୍ୟବସାୟିକ ଭିତ୍ତିରେ 'ଓଡ଼ିଶୀ'ର ପ୍ରଚଳନ।

(ଗ) ଓଡ଼ିଶା ବାହାରର କେତେକ ନୃତ୍ୟାଙ୍ଗନାଙ୍କ ହେତୁ ଓଡ଼ିଶୀର ମାନ ନିମ୍ନଗାମୀ ହେବା।

(ଘ) ଦିଲ୍ଲୀ, କଲିକତା ବମ୍ବେ ସହରର କିଛି ସମ୍ଭ୍ରାନ୍ତ ବ୍ୟକ୍ତିଙ୍କ ଦ୍ୱାରା ନିଜକୁ ସୁହାଇବା ପରି ଓଡ଼ିଶୀ ନୃତ୍ୟ ପ୍ରଦର୍ଶନ।

(ଙ) ସରକାରୀ ପ୍ରୋତ୍ସାହନର ଅଭାବ।

(ଚ) ନୂତନ ନୃତ୍ୟାଙ୍ଗନାମାନଙ୍କୁ ଉପଯୁକ୍ତ ସୁଯୋଗ ଦେବାରେ ଅବହେଳା।

ଏବଂ

(ଛ) ଓଡ଼ିଶା ସାରା ଛତୁ ଫୁଟିଲା ପରି ଓଡ଼ିଶୀ ଶିକ୍ଷା ସଂସ୍ଥା ଖୋଲିବା, ଇତ୍ୟାଦି।

ସବୁଠାରୁ ଆଶ୍ଚର୍ଯ୍ୟର କଥା, ତାଙ୍କର ଏତାଦୃଶ ଟୀକ୍କା ଟିପ୍‌ପଣୀର ଗୋଟିଏ ହେଲେ ପ୍ରତିବାଦ ବା ବିରୋଧ ପ୍ରକାଶ ପାଇବା ଏ ଲେଖକର ଦୃଷ୍ଟିକୁ ଆସିନାହିଁ। ଏଥିରୁ ଜଣେ ଶ୍ରୀ ସାମଲଙ୍କ ସମାଲୋଚନାକୁ ବିଶ୍ୱାସ ଅଥବା ଗ୍ରହଣ କରିବାକୁ ବାଧ୍ୟ ହେବ।

କିଛିମାସ ପୂର୍ବେ କେନ୍ଦ୍ର ସଂଗୀତ ଏକାଡେମୀ ଆନୁକୂଲ୍ୟରେ ହୋଇଥିବା 'ନୃତ୍ୟପର୍ବ'ରେ ଜନୈକା ନୃତ୍ୟଶିଳ୍ପୀ ତାଙ୍କ ଅଭିନୟରେ 'ଆହେ ବନଗିରି ଆହେ ଲତାଗିରି; ମୋ କାନ୍ତ ଗଲେ ମୃଗମାରି' ପ୍ରଦର୍ଶନ କରିବା ବେଳେ ସୀତାଙ୍କ ଅସହାୟ ଭାବ ପ୍ରକଟ କରିବା ପରିବର୍ତ୍ତେ ଏପରି ଖୁସି ଜଣାପଡୁଥିଲେ ଯେ ସୀତା ଯେପରି ବଣଭୋଜି ପାଇଁ ଯାଉଛନ୍ତି— ଏପରି ମନେ ହେଉଥିଲା ବୋଲି ସେ ଅଭିଯୋଗ କରିଛନ୍ତି। ଓଡ଼ିଶୀ ପରମ୍ପରାରେ ବିଲକ୍ଷଣର ମଞ୍ଜି ଅନେକ ଦିନରୁ ପୋତା ସରିଥିଲା। ଏବେ ତାହା ଶାଖାପ୍ରଶାଖା ଧରିଥିବାର ଦୃଷ୍ଟିଗୋଚର ହୁଏ। ଦୁଇ ଦଶନ୍ଧି ତଳେ, ଓଡ଼ିଶୀ ନୃତ୍ୟର ସମ୍ଭବତଃ ପ୍ରଥମ ଗୁରୁ ପଙ୍କଜ ଚରଣ ଦାସଙ୍କ ସହ ଏହି ଲେଖକର ପରିଚୟ ହୋଇଥିଲା କୁମାର୍ ମହାନ୍ତିଙ୍କ ସୌଜନ୍ୟରୁ। ସେତେବେଳେ କୁମାର୍ ମହାନ୍ତିଙ୍କ ପାଖକୁ ପଙ୍କଜ ବାବୁ ଆସୁଥିଲେ ଓଡ଼ିଶୀ ନୃତ୍ୟ ସମ୍ପର୍କରେ ଏକ ଭିତ୍ତିପ୍ରବନ୍ଧ

ପ୍ରସ୍ତୁତି ପାଇଁ । ପରେ ଏ ଲେଖକ ଜାଣିବାକୁ ପାଇଥିଲା ଯେ ବମ୍ବେ ମହାନଗରୀରେ (ଏବେ, ମୁମ୍ବାଇ) ଏକ ସର୍ବଭାରତୀୟ ନୃତ୍ୟ କର୍ମଶାଳାରେ ଯୋଗ ଦେବାପାଇଁ କୁମାର୍ ମହାନ୍ତି, ପଙ୍କଜ ଦାସ ଓ ତାଙ୍କର କନ୍ୟା ବିଜୟଲକ୍ଷ୍ମୀ ଯାଉଛନ୍ତି । ଆଶ୍ଚର୍ଯ୍ୟର କଥା, ଏତେବର୍ଷ ଓଡ଼ିଶୀ ନୃତ୍ୟ ସହ ସମ୍ପୃକ୍ତ ଥାଇବି, ଓଡ଼ିଶୀ ସମ୍ପର୍କରେ ସମ୍ୟକ୍ ଜ୍ଞାନ ଥିବା କୁମାର୍ ବାବୁଙ୍କ ପାଖରୁ ପଙ୍କଜ ଚରଣ ଦାସ ଭିତ୍ତି ପ୍ରବନ୍ଧ ନେଉଥିଲେ । ଶାସ୍ତ୍ରୀୟ ମାନ୍ୟତା ଲାଭ କରିବାପରେ ଓଡ଼ିଶୀର ଏଇ ଦୁର୍ଦଶା ଆରମ୍ଭ ହୋଇଛି ବୋଲି ଧରିନେବାକୁ ହେବ । ପ୍ରତିଯୋଗିତାରେ କଥକ ଓ ଭାରତନାଟ୍ୟମ୍‌କୁ ପଛରେ ପକାଇ ଦର୍ଶକମାନଙ୍କ ପାଖରେ ସହଜରେ ପହଞ୍ଚି ପାରୁଥିବା ଓଡ଼ିଶୀର ଲୋକପ୍ରିୟତା ପାଇଁ ତତ୍‌କାଳୀନ ଗୁରୁ ଓ ନୃତ୍ୟାଙ୍ଗନାମାନେ ଯେପରି ଚେଷ୍ଟା ଚଳାଇଥିଲେ, ସେତେବେଳେ ସେମାନଙ୍କର ଏତାଦୃଶ ପ୍ରଚେଷ୍ଟାକୁ ଦେଶବାସୀ ଉତ୍ସାହର ସହ ସ୍ୱାଗତ କରୁଥିବାର ଏ ଲେଖକ ଦେଖିଛି । ମାତ୍ର ସେମାନଙ୍କ ପ୍ରଚେଷ୍ଟାରେ ସଂସ୍କୃତିକୁ ପରିପୁଷ୍ଟ କରିବାର ଇଚ୍ଛା ପରିବର୍ତ୍ତେ ବ୍ୟକ୍ତିଗତ ସ୍ୱାର୍ଥ ହିଁ ଅଧିକ କାର୍ଯ୍ୟ କରିଥିଲା ବୋଲି କିଏ ଅବା ଭାବିବ ? ପ୍ରସଙ୍ଗକ୍ରମେ 'ପଞ୍ଚତନ୍ତ୍ର'ର ଚତୁରକ ଶୃଗାଳ କଥା ମନେପଡ଼େ—

ଏକଦା କୌଣସି ଏକ ଜଙ୍ଗଲରେ ଗୋଟିଏ ସିଂହ ବାସ କରୁଥିଲା । ଗଧଟିଏ ଓ ଶୃଗାଳଟିଏ ତା'ର ପରିଗ୍ରହକ ଥିଲେ । ଶୃଗାଳଟିର ନାମ ଚତୁରକ । ଥରେ ଶିକାର ହୋଇଥିବା ଗୋଟିଏ ପ୍ରସବୋନ୍ମୁଖୀ ଓଟକୁ ଖାଇବାବେଳେ ତା'ର ପେଟରୁ ଚତୁରକ ଜୀବନ୍ତ ଶିଶୁ ଓଟଟିଏ ପାଇଲା ଏବଂ ଦୟାପରବଶ ହୋଇ ତାକୁ ନିଜ ବାସସ୍ଥଳୀକୁ ନେଇ ଆସିଲା । ଶିଶୁ ଓଟଟିର ରକ୍ଷଣାବେକ୍ଷଣ ସହ ତା'ର କୌଣସି ଅସୁବିଧା ହେବ ନାହିଁ ବୋଲି ସିଂହ ଅଭୟ ପ୍ରଦାନ ମଧ୍ୟ କଲା । ଓଟଟିର ନାମ ଥିଲା 'ଶଙ୍କୁକରଣ' । ଶଙ୍କୁକରଣ ସବୁବେଳେ

ଛାଇ ପରି ସିଂହ ସାଥିରେ ରହୁଥିଲା । ଏକଦା ଏକ ଦନ୍ତାହାତୀ ଦ୍ୱାରା ଆଘାତ ପାଇଁ ସିଂହ ଶଯ୍ୟାଶାୟୀ ହୋଇଗଲା ଏବଂ ନିଜର ଖାଦ୍ୟ ଖୋଜିବା ତା' ପକ୍ଷରେ ଅସମ୍ଭବ ହୋଇପଡ଼ିଲା । ବାଧ୍ୟ ହୋଇ କ୍ଷୁଧାର୍ତ୍ତ ସିଂହ ଅଗତ୍ୟା ଶଙ୍କୁକରଣକୁ ଭୋଜନ କରିବା କଥା ଚିନ୍ତା କରି ତା'ର ଦୁଇ ପରିଚାରକ ଗଧ ଓ ଚତୁରକକୁ ଏହି ପ୍ରସ୍ତାବ ଦେଲା । ସିଂହର ପ୍ରସ୍ତାବରେ ସମ୍ମତ ହୋଇ ଚତୁରକ ଶଙ୍କୁକରଣକୁ ସାଥିରେ ନେଇ ସିଂହ ପାଇଁ ଖାଦ୍ୟ ଅନ୍ୱେଷଣର ବାହାନାରେ ଜଙ୍ଗଲ ଭିତରକୁ ଗଲା । ରାସ୍ତାରେ ସେ ଶଙ୍କୁକରଣକୁ ବୁଝାଇବାକୁ ଚେଷ୍ଟା କଲା ଯେ ସେ ଯଦି ସ୍ୱତଃପ୍ରବୃତ୍ତ ଭାବେ ସିଂହ ପାଖରେ ନିଜକୁ ଉତ୍ସର୍ଗ କରିବାକୁ ରାଜିହୁଏ ତେବେ ପରଜନ୍ମରେ ତାକୁ ଏଇ ଜନ୍ମରେ ଥିବା ତା'ର କ୍ଷୁଦ୍ର ଶରୀରର ଦୁଇଗୁଣ ଶରୀରରେ ଜନ୍ମ ହୋଇପାରିବା ଭଳି ଗ୍ୟାରେଣ୍ଟୀ ସେ ସିଂହଠାରୁ ଆଦାୟ କରିପାରିବ । କୋମଳମତି କିଶୋର ଓଟଟି ଚତୁରକର ଚାଟୁକଥାରେ ସିଂହ ପାଇଁ ଭୋଜ୍ୟ ହେବାକୁ ତୁରନ୍ତ ରାଜି ହୋଇଗଲା ।

ରାଜି ହେବା ମାତ୍ରେ ଚତୁରକ ତତ୍‌କ୍ଷଣାତ୍ ଶଙ୍କୁକରଣ ଉପରକୁ ଝାମ୍ପି ପଡ଼ିଲା ଓ ତାକୁ ଖଣ୍ଡବିଖଣ୍ଡିତ କରିଦେଲା । କିଶୋର ଓଟଟିର ମୃତ ଶରୀର ସିଂହର ଭୋଜନ ପାଇଁ ପ୍ରସ୍ତୁତ ହୋଇ ସାରିବା ପରେ, ନିକଟତମ ନଦୀରେ ସ୍ନାନ କରି ଆସିବା ଲାଗି ସିଂହ ମନସ୍ଥ କଲା ଏବଂ ଚତୁରକକୁ ତା'ର ଖାଦ୍ୟ ଜଗି ରହିବାକୁ ନିର୍ଦ୍ଦେଶ ଦେଇ ନଦୀ କୂଳକୁ ଚାଲିଗଲା ।

ସିଂହ ସ୍ନାନ ନିମିତ୍ତ ଚାଲିଯିବା ପରେ ଚତୁରକ ଏଥର ଗଧକୁ ପଚାରିଲା : ତୁମେତ ଖୁବ୍ ଭୋକିଲା ଜଣାପଡୁଛ ? ଗଧଟି ଚତୁରକର କଥାରେ ମୁଣ୍ଡ ଟୁଙ୍ଗାରିବାରୁ ଚତୁରକ ତାକୁ କିଶୋର ଓଟର ମାଂସ କିଛି ଖାଇବା ପାଇଁ ପ୍ରସ୍ତାବ ଦେଲା । ସିଂହ ଫେରି ଆସି ଓଟର କଲିଜା ନଥିବା ଦେଖି ରାଗରେ ଗର୍ଜନ କଲା ଏବଂ ଫଳସ୍ୱରୂପ ସିଂହ ଗଧଟିକୁ

ତତ୍‌କ୍ଷଣାତ୍ ମାରିବାକୁ ଉଦ୍ୟତ ହୁଅନ୍ତେ ଗଧ ଦୌଡ଼ିବାକୁ ଲାଗିଲା ପ୍ରାଣ ବିକଳରେ । ଠିକ୍ ଏତିକିବେଳେ କିଛି ଦୂରରୁ ବଳଦଗାଡ଼ିର ଘଣ୍ଟି ଶୁଣାଗଲା । ସେ ସମ୍ପର୍କରେ ତୁରନ୍ତ ଅନୁସନ୍ଧାନ କରି ଆସିବାକୁ ସିଂହ ଚତୁରକକୁ ନିର୍ଦ୍ଦେଶ ଦେଲା । ଚତୁର ଚତୁରକ କିଛିବାଟ ଯାଇ ପୁନଶ୍ଚ ସିଂହ ପାଖକୁ ଫେରି ଆସି ଛଳରେ କହିଲା, ମୃତ କିଶୋର ଓଟର ପିତାମହ, ପ୍ରପିତାମହଙ୍କୁ ନେଇ ମୃତ୍ୟୁଦେବତା ଯମ ପ୍ରତିଶୋଧ ନେବାକୁ ସେଠାକୁ ଆସୁଛନ୍ତି । ତେଣୁ ସିଂହ ସେହି ସ୍ଥାନ ପରିତ୍ୟାଗ କରିବା ଉଚିତ ବୋଲି ମତ ବ୍ୟକ୍ତ କଲା । ଚତୁରକ ଏପରି କୁହନ୍ତେ, ଆତ୍ମରକ୍ଷା ନିମନ୍ତେ ସିଂହ କିଶୋର ଓଟର ମାଂସର ଲୋଭ ସମ୍ବରଣ କରି ସେଠାରୁ ପଳାୟନ କଲା । ଏହିପରି ଭାବରେ ନିରଂକୁଶ ହୋଇ ଚତୁରକ ଆନନ୍ଦରେ ଶଙ୍କୁକରଣର ମାଂସ ଭକ୍ଷଣ କରିବାରେ ଲାଗିଲା ।

ଆମ ସମାଜରେ 'ଚତୁରକ' ଚରିତ୍ରର ଆଦୌ ଅଭାବ ନାହିଁ । ଅନ୍ତତଃ ଅମର ସାମଲଙ୍କ କ୍ରମାଗତ ସମାଲୋଚନା ସତ୍ତ୍ୱେ ସେମାନଙ୍କ ଯୋଜନାବଦ୍ଧ ନୀରବତା ଏଇକଥା ସୂଚାଇ ଦେବାରେ ବେଶ୍ ସହାୟକ ହୋଇଛି । ପରବର୍ତ୍ତୀ ସମୟରେ ସେମାନେ ନିଜର ହୀନ ସ୍ୱାର୍ଥସିଦ୍ଧି ପାଇଁ ଏଇ ନୀରବତାକୁ ଯେ ପୁଞ୍ଜି କରିବେ, ଏଥିରେ ସନ୍ଦେହ ନାହିଁ ।



# ପାହାଡ଼ ସେପାଖ ସୂର୍ଯ୍ୟ

ସତୁରି ଦଶକର ମଧ୍ୟଭାଗର ଘଟଣା । ବିଭିନ୍ନ ଉତ୍ପାଦିତ ସାମଗ୍ରୀର ବିଜ୍ଞାପନ ପାଇଁ ସେ 'ମଡେଲ୍' ଭାବେ କାମ କରୁଥାନ୍ତି । ଗୋଟିଏ କପଡ଼ା କମ୍ପାନୀର ବିଜ୍ଞାପନ ଶୁଟିଙ୍ଗ୍ ପୂର୍ବରୁ ତତ୍‌ସମ୍ପର୍କୀୟ କାର୍ଯ୍ୟ ତଦାରଖ ପାଇଁ 'କ୍ରିଏଟିଭ୍' ନାମକ ଏକ ବିଜ୍ଞାପନ ସଂସ୍ଥାକୁ ସେ ଯାଇଥାନ୍ତି । ବର୍ଷଣମୁଖର ପୂର୍ବାହ୍ନ । ସେଇଠି ଭେଟ ହୁଏ ତାଙ୍କର ଦୁଇତିନି ଉପର କ୍ଲାସରେ ପଢୁଥିବା ବାନ୍ଧବୀ ଶିଲ୍ପା ଶାହାଙ୍କ ସହ । ଦୁହେଁ ସେଣ୍ଟ୍ ଜାଭିୟର୍ସ୍ କଲେଜ୍‌ରେ ପଢୁଥିବା ସମୟର ବିଭିନ୍ନ ଘଟଣା ଓ ଚରିତ୍ରକୁ ନେଇ ଆଳାପ ଆଲୋଚନାରେ ବ୍ୟସ୍ତ ଥାନ୍ତି । ଏଇଠି ଶିଲ୍ପା ତାଙ୍କୁ ଏକ ପ୍ରସ୍ତାବ ଦେଲେଃ 'ତମେ ଲେଖିପାରିବ ?' (Can you write ?) । ଏଇ ମାତ୍ର ତିନୋଟି ଶବ୍ଦ ତାଙ୍କ ଜୀବନର ଗତିକୁ ଅସମ୍ଭବ ଭାବେ ବଦଳେଇଦେଲା ଯେମିତି । ଶିଳ୍ପାଙ୍କୁ ତତ୍‌କ୍ଷଣାତ୍ ସେ 'ହଁ' କହିବା ସହ, ଲେଖାଲେଖି କରି ସେ ଆନନ୍ଦ ପାଇପାରିବେ ବୋଲି ମତ ଦେଇ-ଦେଲେ । କଥାବାର୍ତ୍ତାବେଳେ ସେ ଶିଳ୍ପା ଅନ୍ତଃସତ୍ତ୍ୱା ଥିବାର ଆଭାସ

ପାଇଥିଲେ । ସେ ଆହୁରି ମଧ୍ୟ ଜାଣି ପାରିଥିଲେ ଯେ ଶିଲ୍ପା ପ୍ରସବ ସମ୍ପର୍କିତ ଦୁଇ ତିନିମାସର ଛୁଟି ନେବେ । ସେଇଥିପାଇଁ ତାଙ୍କ ବଦଳରେ ଆଉ ଜଣେ ଅସ୍ଥାୟୀ କପୀ ରାଇଟର୍ ଖୋଜିବା ପାଇଁ ବିଜ୍ଞାପନ ସଂସ୍ଥାର ମୁଖ୍ୟ ନରିହାରା ନିର୍ଦ୍ଦେଶ ଦେଇଥିଲେ । ଯେତେବେଳେ ସଂସ୍ଥାର ମୁଖ୍ୟଙ୍କୁ ଶିଲ୍ପା ତାଙ୍କ ସହପାଠିନୀର ସଂକ୍ଷିପ୍ତ ବିବରଣୀ ଦେଲେ, ମୁଖ୍ୟଜଣକ କଠୋର ଟିପ୍ପଣୀଟିଏ ଦେଇଥିଲେ : ତାଙ୍କ ସଂସ୍ଥା ପାଇଁ ସେ ଜଣେ ଲେଖିକା ଦରକାର କରୁଛନ୍ତି; କୌଣସି ରୂପସୀ ନୁହେଁ । ଅବଶ୍ୟ ସେଇ ବର୍ଷଣମୁଖର ମଧ୍ୟାହ୍ନରେ ବିଜ୍ଞାପନ ସଂସ୍ଥାର ମୁଖ୍ୟଙ୍କ କଠୋର ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ପରବର୍ତ୍ତୀ ସମୟରେ ନିଜକୁ ଜଣେ ସଫଳ ଓ ଲୋକପ୍ରିୟ ଔପନ୍ୟାସିକା ଭାବେ ଆନ୍ତର୍ଜାତିକ ସ୍ତରରେ ପ୍ରତିଷ୍ଠା କରାଇ ପାରିଛନ୍ତି ଏଇ ରୂପସୀଜଣକ । ଏ ସମ୍ପର୍କରେ ଖୁବ୍ ଚମତ୍କାର ବର୍ଣ୍ଣନା କରିଛନ୍ତି ନିଜେ ଶୋଭା ଦେ', ତାଙ୍କ "ସ୍ମରଣଚୟନ : କାହାଣୀ, ମୋ ଜୀବନରୁ" ଜୀବନୀ-ପୁସ୍ତକରେ (Selective Memory : Stories from My Life) ।

ଏପରି ଏକ ନିଷ୍ପତ୍ତି ନେବା ଏତେ ସହଜ ନଥିଲା ଶୋଭାଙ୍କ ପକ୍ଷରେ । ମାତ୍ର ତିନିଶହ ପଚାଶ ଟଙ୍କା ଦରମାର କପୀ ରାଇଟର୍‌ର ଚାକିରିଟି ପାଇବା ସମୟରେ ଶୋଭା ଦେ' ମଡେଲିଙ୍ଗ୍ କରି ମାସକୁ ଦଶରୁ ପନ୍ଦରହଜାର ଟଙ୍କା ରୋଜଗାର କରୁଥିଲେ । ଯଦିଓ ପରବର୍ତ୍ତୀ ସମୟରେ ସେ ଏଇ ବୃତ୍ତିକୁ ଆଦରି ନାହାନ୍ତି, ତଥାପି ଜଣେ ଲେଖକ ହେବାର ପ୍ରଥମ ସ୍ୱପ୍ନ ସେ ଏଇ ବୃତ୍ତିରୁ ହିଁ ପାଇଥିଲେ। ଲେଖକ ହେବା ଲାଗି ତାଙ୍କୁ ଅନେକ ତ୍ୟାଗ ସ୍ୱୀକାର ଓ ପିଚ୍ଛିଳ ପଥ ଅତିକ୍ରମ କରିବାକୁ ପଡ଼ିଛି । ସବୁ ସିଦ୍ଧି ପଛରେ ଯେ ବର୍ଷବର୍ଷର ସାଧନା

ଲୁଚିରହିଥାଏ, ଏକଥା କହିବା ନିଷ୍ପ୍ରୟୋଜନ। ପ୍ରବାଦ ଅଛି, ଶାନ୍ତ ସାଗରଟି କୁଶଳୀ ନାବିକଟିଏ କଦାପି ତିଆରି କରିପାରେନା (A smooth sea never make a skillful mariner)। ସମୟର ବାଲିଶେଯ ଉପରେ ସଫଳତାର ପାଦଚିହ୍ନ ଛାଡ଼ିବାକୁ ହେଲେ ପ୍ରଥମେ ସେଠାରେ ପାଦଟିଏ ଥାପିବାକୁ ତ ପଡ଼ିବ ! ବାଲିଶେଯ ଉପରେ ଜାକିଜୁକି ବସିରହିଲେ କେବେ ପାଦଚିହ୍ନ ଛାଡ଼ିହେବ ନାହିଁ। ସେଥିପାଇଁ ତ ଆବଶ୍ୟକ ଗଳଦ୍‌ଘର୍ମ ପ୍ରୟାସ !

ଥରେ ବିଶିଷ୍ଟ ଦାର୍ଶନିକ ସକ୍ରେଟିସ୍‌ଙ୍କ ପାଖକୁ ଗୋଟିଏ ଯୁବକ ଆସି ପ୍ରଶ୍ନ କଲା : "ଆପଣ ଏପାବତ୍ ଯେଉଁ ଜ୍ଞାନର ଅଧିକାରୀ ହୋଇ ପାରିଛନ୍ତି, ସେସବୁ ମତେ ଜଣେଇବେ କି ?" ଯୁବକଟିର ପ୍ରଶ୍ନ ଶୁଣି ସକ୍ରେଟିସ୍ ହସିଲେ ଏବଂ କହିଲେ, "ଅବଶ୍ୟ !"। ସେ ତାଙ୍କୁ ଅନୁସରଣ କରିବା ଲାଗି ଯୁବକଙ୍କୁ ନିର୍ଦ୍ଦେଶ ଦେଇ ନିଜେ ଉଠିଲେ। କିଛି ସମୟପରେ ଗୋଟିଏ ନଦୀକୂଳରେ ପହଞ୍ଚିଲେ ଦୁହେଁ।

"କିଛି ଦେଖି ପାରୁଛ ?", ପଗ୍ଚରିଲେ ସକ୍ରେଟିସ୍

"ହଁ, ନୀରବରେ ବହି ଯାଉଚି ଗଭୀର ନଦୀର ଜଳ," କହିଲା ଯୁବକ।

ଆସ୍ତେଆସ୍ତେ ନଦୀ ଭିତରକୁ ଗଲେ ସକ୍ରେଟିସ୍। ସାଥିରେ ଜ୍ଞାନପିପାସୁ ଯୁବକ। ହଠାତ୍ ନିଜର ଦୁଇ ହାତରେ ବଳପ୍ରୟୋଗ କରି ସକ୍ରେଟିସ୍ ଯୁବକକୁ ପାଣି ଭିତରେ ବୁଡ଼ାଇଦେଲେ ଏବଂ ମୁଣ୍ଡଟିକୁ ପାରୁପର୍ଯ୍ୟନ୍ତ ପାଣିରେ ବୁଡ଼ାଇ ରଖିଲେ। ପ୍ରାଣବିକଳରେ ଛାଟିପିଟି ହେଉଥାଏ ଯୁବକଟି। ଧୀରେଧୀରେ ପାଣି ଭିତରେ ଯୁବକଟିର ମୁହଁ ନେଳି ପଡ଼ିବାକୁ ଆରମ୍ଭ କଲା। ସେତିକିବେଳେ ଯୁବକଟିର ମଥାରୁ

ନିଜ ହାତ ଫେରାଇ ଆଣିଲେ ସେକ୍ରେଟିସ୍। ପାଣି ଭିତରେ ଆକତାମାକତା ହେଉଥିବା ଯୁବକଟି ତତ୍‌କ୍ଷଣାତ୍ ପାଣି ଉପରକୁ ନିଜ ମୁଣ୍ଡ ଉଠାଇ ଆଣିବା ସହ ଧଇଁସଇଁ ହେଇ ତାଙ୍କୁ କହିଲା।

"ମାରିଦେବେ ନା କ'ଣ ?"

ନିର୍ବିକାରଭାବେ ଏଥର ଯୁବକଟିକୁ ଚାହିଁ ସକ୍ରେଟିସ୍ ତାକୁ ପଚାରିଲେ : "ପାଣିରୁ ବାହାରି କ'ଣ ଖୋଜିଲ ପ୍ରଥମେ ?"

"ପବନ", ସେମିତି ଧଇଁସଇଁ ହୋଇ ଯୁବକଟି କହିଲା। ସକ୍ରେଟିସ୍ ଏଥର ଯୁବକଟିକୁ ବୁଝାଇଦେଲେ ଯେ, ପାଣିରୁ ଉଠି-ଆସିବାପରେ ସେ ଯେମିତି ବିକଳଭାବେ ପାଟି ଓ ନାକ ମେଲାକରି ପବନ ଖୋଜିଲା, ଠିକ୍ ସେହିପରି ଖୋଜିଲେ ସେ ଯାହା ଚାହିଁବ, ତା' ପାଇଯିବ। ଏ କଥାଟି କେବଳ ସେ ଯୁବକ ପାଇଁ ନୁହଁ, ସବୁ କାଳରେ ସବୁ ଲୋକଙ୍କ ପାଇଁ ମର୍ମବଚନ।

ପ୍ରସଙ୍ଗକ୍ରମେ ନାରୀର ଅଧିକାର କଥାଟିକୁ ବିଚାର କରାଯାଇପାରେ। ପୁରୁଷର ପ୍ରାଧାନ୍ୟ ଥିବା ସମାଜରେ, ଯେଉଁଠି ନିଜର ସ୍ୱାମୀ ଖୋଜିବାର ଅଧିକାର, ଅବା କେତୋଟି ସନ୍ତାନର ଜନନୀ ହେବେ ସେ ନେଇ ନିଷ୍ପତ୍ତି ନେବାର ସୁଯୋଗ ନାରୀ ପାଖରେ ନାହିଁ ଏବଂ ଯେଉଁଠାରେ ଦୁଇଦେଶ ମଧ୍ୟରେ ଚାଲିଥିବା ଯୁଦ୍ଧବେଳେ ଶତ୍ରୁଦେଶରେ ସୈନିକମାନେ ଗଣଧର୍ଷଣକୁ ଗୌରବ ବୋଲି ମନେକରନ୍ତି ଏବଂ ଯେଉଁଠାରେ କନ୍ୟାଭ୍ରୁଣହତ୍ୟା ମାତ୍ର ଏକ ମାମୁଲି କଥାଭାବେ ସ୍ୱୀକୃତ, ସେଠି ନାରୀର ଅଧିକାର ନେଇ ପ୍ରଶ୍ନ ଉଠାଇ ଜୟଯୁକ୍ତ ହେବା ନିଶ୍ଚିତଭାବେ ଆଶ୍ୱାସନାର ବିଷୟ।

ଘଟଣାଟି ଏଇପରି। କିଛିମାସ ପୂର୍ବେ ବିଶିଷ୍ଟ ଲେଖିକା ଗୀତା

ହରିହରନ୍ ତାଙ୍କ ଦୁଇପୁଅଙ୍କ ପାଇଁ ରିଜର୍ଭ୍ ବ୍ୟାଙ୍କ୍‌ର ରିଲୀଫ୍ ବଣ୍ଡ ଖରିଦ କରିବାପାଇଁ ଯେଉଁ ଆବେଦନପତ୍ର ଦେଇଥିଲେ ସେଥିରେ ଅଭିଭାବକଙ୍କ ପାଇଁ ଉଦ୍ଦିଷ୍ଟ ଥିବା ସ୍ଥାନରେ ନିଜର ସ୍ୱାମୀଙ୍କ ନାଁ ପରିବର୍ତ୍ତେ ଶ୍ରୀମତୀ ହରିହରନ୍ ତାଙ୍କ ନିଜ ନାଁ' ଲେଖିଥିଲେ। ତାଙ୍କ ସ୍ୱାମୀ ଜୀବିତ ଥିବାରୁ ଶ୍ରୀମତୀ ହରିହରନ୍ ଅଭିଭାବକ ହୋଇପାରିବେନି– ଏଇ ଆଳରେ କର୍ତ୍ତୃପକ୍ଷ ତାଙ୍କ ଆବେଦନପତ୍ରଟି ନାକଚ କରିଦେବା ଫଳରେ ଶ୍ରୀମତୀ ହରିହରନ୍ ସର୍ବୋଚ୍ଚ ନ୍ୟାୟାଳୟରେ ମାଆର ଅଭିଭାବକତ୍ୱ ନେଇ ପ୍ରଶ୍ନ ଉଠାଇଥିଲେ। ଶତାବ୍ଦୀର ଶେଷ ଅଡ଼କୁ ଏକ ଶ୍ରେଷ୍ଠ ରାୟରେ ତିନିଜଣ ବିଗ୍ରହପତିଙ୍କୁ ନେଇ ଗଠିତ ଖଣ୍ଡପୀଠ ଶ୍ରୀମତୀ ହରିହରନ୍‌ଙ୍କୁ ଅଭିଭାବକ ଭାବେ ସ୍ୱୀକୃତି ପ୍ରଦାନ କରିବା ସହ ରାଷ୍ଟ୍ରର ସମସ୍ତ ମାଆଙ୍କୁ ଏଇ କ୍ଷମତା ପ୍ରଦାନ କରିଛନ୍ତି। ଏଣିକି ବାପା ଓ ମାଆଙ୍କୁ ସମାନ ଅଧିକାର ମିଳିଛି ଅଭିଭାବକପଣିଆଁ ପାଇଁ। କହିବା ବାହୁଲ୍ୟ, ଏହା କେବଳ ଶ୍ରୀମତୀ ହରିହରନ୍‌ଙ୍କ ଯୋଗୁଁ ସମ୍ଭବ ହୋଇଛି।

ପ୍ରକାରାନ୍ତରେ, ଅନ୍ଧାରକୁ ନିଜର ବିଡ଼ମ୍ବିତ ଭାଗ୍ୟ ବୋଲି ମନେ କରୁଥିବା ଦୁର୍ବଳାଙ୍କୁ ଏଇ ମହିୟସୀ ଶ୍ରୀମତୀ ହରିହରନ୍ ହିଁ ପାହାଡ଼ ସେପାଖର ସୂର୍ଯ୍ୟ ଦର୍ଶନ କରାଇବାରେ ସକ୍ଷମ ହୋଇଛନ୍ତି।



# ଗ୍ରାହକ ଅଭିଯୋଗ

ସେଦିନ ବନ୍ଧୁଙ୍କର କଥା ଶୁଣୁଥାଏ ନୀରବରେ— ତାଙ୍କ ନିଜ ଅନୁଭୂତିର କଥା । ବନ୍ଧୁ ମୋ'ର ବିଭିନ୍ନ ପଞ୍ଚତାରକା ହୋଟେଲ୍‌ମାନଙ୍କର ଭିନ୍ନଭିନ୍ନ ପଦବୀରେ କାମ କରିଛନ୍ତି ଦେଶରେ ଆଉ ବିଦେଶରେ । ତେବେ ଗ୍ରାହକ ଜୀବନର ପ୍ରାରମ୍ଭିକ ଘଟଣାଟି ଏଇପରି : ରାଜ୍ୟର ଏକ ପଞ୍ଚତାରକା ହୋଟେଲ୍‌ରେ ଅନ୍ୟାନ୍ୟ ସହକର୍ମୀଙ୍କ ସହ କାର୍ଯ୍ୟ କରୁଥାନ୍ତି ସେ । ଗୋଟିଏ ଶୀତ ସକାଳର କଥା । ହୋଟେଲ୍‌ରେ ରହୁଥିବା ଜଣେ ବିଦେଶୀ ନାଗରିକ ବ୍ରେକ୍‌ଫାଷ୍ଟ ପାଇଁ କୋଠରିରୁ ଆସି ଟେବୁଲ୍ ପାଖରେ ବସିଲେ । ଜଣେ ହୋଟେଲ୍ ପରିଚାରକ ସାମ୍ନାରେ ଆଣି ବରାଦ ମୁତାବକ ଜଳଖିଆ ରଖିଦେଲା । ବିଦେଶୀ ନାଗରିକ ଖାଉଥିବା ସମୟରେ ହଠାତ୍ ଖାଦ୍ୟ ଭିତରୁ ବାହାରିଲା ପୂର୍ଣ୍ଣଦଗ୍‌ଧ ଅସରପାଟିଏ । ଅତି ସନ୍ତର୍ପଣରେ ଅସରପାଟିର ନିଶକୁ ନିଜର ଦୁଇ ବାମ ଅଙ୍ଗୁଳି ମଝିରେ ଝୁଲାଇ ରଖିଲେ ସେ । ଉଦ୍ଦେଶ୍ୟ ଥିଲା ହୋଟେଲ୍‌ରେ ଘଟୁଥିବା ଅଯତ୍ନ ସମ୍ପର୍କରେ ସେଠାକାର କର୍ମଚାରୀମାନଙ୍କ ଦୃଷ୍ଟି ଆକର୍ଷଣ

କରାଇବା । ତାହା ହିଁ ହେଲା । ଅବିଳମ୍ବେ ସେଠାରେ ପହଞ୍ଚିଲେ ମୋ'ର ବନ୍ଧୁ ଓ କର୍ତ୍ତବ୍ୟରତ ତାଙ୍କର ଆଉ କେତେକ ସହକର୍ମୀବୃନ୍ଦ । ବନ୍ଧୁ ଆତଙ୍କିତ । କାରଣ ଏଇ ଘଟଣାଟି ତାଙ୍କ ହୋଟେଲ୍‌କୁ ଯେ କେବଳ ବଦନାମ କରିବାରେ ଯଥେଷ୍ଟ ସାହାଯ୍ୟ କରିବ ତା' ନୁହେଁ, ବରଂ ଏଇ ଘଟଣାଟିକୁ ମସଲାଯୁକ୍ତ କରି ସମଗୋତ୍ରୀୟ ପ୍ରତିଦ୍ୱନ୍ଦ୍ୱୀ ସଂସ୍ଥାମାନେ ରୀତିମତ ପ୍ରଚାର ଚଳାଇବେ । ସମବେତ ସହକର୍ମୀଙ୍କ ମଧ୍ୟରୁ ହଠାତ୍ ଜଣେ ବିଦେଶୀ ନାଗରିକଙ୍କ ଅଙ୍ଗୁଳି ପାଖକୁ ତା'ର ଆଖିଦୁଇଟି ନେଲା ଏବଂ ଟିକିଏ ହସି ଏହା 'ଅସରପା' ନୁହେଁ ବୋଲି ଘୋଷଣା କଲା । ସହକର୍ମୀଙ୍କ ଏତାଦୃଶ ଯୁକ୍ତି କେବଳ ଉକ୍ତ ବିଦେଶୀ ନାଗରିକଙ୍କୁ ନୁହେଁ ବରଂ ଉପସ୍ଥିତ ଅନ୍ୟାନ୍ୟ ବନ୍ଧୁମାନଙ୍କୁ ଖୁବ୍ ବିରକ୍ତ କରିଥିଲା ମନେ-ମନେ । ମାତ୍ର ସବୁ ବିରକ୍ତିର ପରିସମାପ୍ତି ଘଟାଇ ସହକର୍ମୀଜଣକ ବିଦେଶୀ ନାଗରିକଙ୍କ ଅଙ୍ଗୁଳିରୁ ମୁକ୍ତ କରି ସେଇ ପୋଡ଼ା ଅସରପାଟିକୁ ଟିକିଏ ନିରୀକ୍ଷଣ କଲେ ଓ 'ବେଶି ଭାଜି ହୋଇଥିବା ପିଆଜଟେ' କହି ପାଟିରେ ପୂରାଇ ଗ୍ରେବାଇଗ୍ରେବାଇ ଗିଳିଦେଲେ । ଏକ ବିପଦ ଟଳିଗଲା ହୋଟେଲ୍ ପାଇଁ ।

ବନ୍ଧୁଙ୍କଠାରୁ ତାଙ୍କ ସହକର୍ମୀଙ୍କ ଜୀବନ ସମ୍ପର୍କରେ ଶୁଣିବା ପରେ ମୋର ସେଇ ପ୍ରବାଦଟି ମନେପଡ଼ିଲା– 'ପଡ଼ି ଉଠିବା, କେବଳ ଏଇଟା ହିଁ ବିଜୟ' (Winning is nothing more than rising each time you fall) । ଏ କଥାକୁ ସମର୍ଥନ କଲାଭଳି ଉଦାହରଣ ଆମ ପାଖରେ କମ୍ ନାହିଁ । ବିଶିଷ୍ଟ ସଂଗୀତଜ୍ଞ ବିଥୋଭନ୍‌ଙ୍କ ସଂଗୀତ ଶିକ୍ଷକ ବିଥୋଭନ୍‌ଙ୍କ ଉପରେ ମନ୍ତବ୍ୟ ଦେଇ କହିଥିଲେ : ଜଣେ ସଂଗୀତ ସଂଯୋଜକ ଭାବେ ସେ ନିହାତି ଫାଲ୍‌ତୁ (As a composer he is

hopeless)। ପ୍ରସିଦ୍ଧ ବୈଜ୍ଞାନିକ ଆଇନ୍‌ଷ୍ଟାଇନ୍‌ଙ୍କୁ ଯେତେବେଳେ ଗ୍ୱରିବର୍ଷ, ସେତେବେଳଯାଏ ସେ କହିବା ଶିଖି ନଥିଲେ। ରସାୟନ-ବିଜ୍ଞାନରେ ଲୁଇ ପାଶ୍ଚର୍ ଆଦୌ ଭଲ କରୁନଥିଲେ ସ୍କୁଲ୍‌ରେ ପଢ଼ିବା-ବେଳେ। ରକେଟ୍‌ବିଜ୍ଞାନୀ ଓ୍ୱର୍‌ନର୍ ଭନ୍ ବ୍ରାଉନ୍ ନବମ ଶ୍ରେଣୀରେ ପଢ଼ିବାବେଳେ ବୀଜଗଣିତରେ ଫେଲ୍ ହୋଇଥିଲେ। ବିଫଳତା ଯେ ସଫଳତାର ଗ୍ୱବିକାଠି, ତା'ର ଉଦାହରଣ ଆମେ ଅନେକଙ୍କଠାରେ ଦେଖିଛୁ। ଏପରି ଜଣେ ବ୍ୟକ୍ତି ଅଛନ୍ତି ଯିଏ ବିଫଳତାର ଅନେକ ପାହାଚ ଚଢ଼ିଲା ପରେ ବି ନିରାଶ ନ ହୋଇ ପ୍ରଚଣ୍ଡ ଆତ୍ମବଳ ଯୋଗୁଁ ପରିଶେଷରେ ସଫଳତାର ଶିଖରରେ ପହଞ୍ଚିପାରିଥିଲେ। ଏଇ ଭଦ୍ରବ୍ୟକ୍ତି ବାଇଶିବର୍ଷ ବୟସରେ ବ୍ୟବସାୟ କରିବା ପାଇଁ ଚେଷ୍ଟାକରି ବିଫଳ ହେଲେ। ତେଇଶିବର୍ଷରେ ରାଜ୍ୟର ବିଧାନସଭା ପାଇଁ ପ୍ରାର୍ଥୀ ହୋଇ ପରାଜୟର ସ୍ୱାଦ ଗ୍ୱଖିଲେ। ପୁନଶ୍ଚ ପଚିଶବର୍ଷ ବୟସରେ ବ୍ୟବସାୟ କରିବା ପାଇଁ ଚେଷ୍ଟା କରି ବିଫଳ ହେଲେ। ସ୍ତ୍ରୀଙ୍କ ମୃତ୍ୟୁ-ଧକ୍କା ପାଇବାବେଳକୁ ତାଙ୍କୁ ହେଇଥିଲା ମାତ୍ର ଛବିଶବର୍ଷ। ସତାଇଶ-ବର୍ଷ ବୟସରେ ନିଜେ ସ୍ନାୟବିକ ରୋଗରେ ପୀଡ଼ିତହେଲେ। ସେଥିରେ ମୁକୁଳି ସେ ପୁନଶ୍ଚ ବାଚସ୍ପତି ପଦ ପାଇଁ ପ୍ରାର୍ଥୀ ହେଲେ ଏବଂ ହାରିଲେ ମଧ୍ୟ। ସେତେବେଳକୁ ତାଙ୍କ ବୟସ ହେଉଛି ଅଣତ୍ରିଶ। ତାଙ୍କ ପାର୍ଟୀ ପକ୍ଷରୁ ପ୍ରାର୍ଥୀପତ୍ର ଦାଖଲ କରି ସେ ଚଉତ୍ରିଶ ବୟସରେ ପୁଣି ହାରିଲେ। ମାତ୍ର ସଇଁତ୍ରିଶବର୍ଷ ବୟସବେଳକୁ ପୁନଶ୍ଚ ନିର୍ବାଚନରେ ହାରିଲେ। ଅଣଗ୍ୱଳିଶ ବର୍ଷରେ ତାଙ୍କ ନାମ ପାର୍ଟୀର ପ୍ରାର୍ଥୀତାଲିକାରୁ ବାଦ୍ ପଡ଼ିଲା। ଛୟାଳିଶବର୍ଷ ବୟସରେ ସିନେଟ୍ ପାଇଁ ପ୍ରାର୍ଥୀ ହୋଇ ହାରିଲେ ଏବଂ ସତଗ୍ୱଳିଶରେ ଉପରାଷ୍ଟ୍ରପତି ନିର୍ବାଚନରେ ହାରିଲେ। ଅଣଗ୍ୱଶବର୍ଷ

ବୟସରେ ସିନେଟ୍ ପାଇଁ ପ୍ରାର୍ଥୀ ହୋଇ ପରାଜୟର ସ୍ୱାଦ ଗ୍ରହଣ କରିଥିଲେ। ମାତ୍ର ଏକାବନ ବର୍ଷ ବୟସରେ ସେ ଆମେରିକାର ରାଷ୍ଟ୍ରପତି ଭାବେ ନିର୍ବାଚିତ ହେଲେ। ଏଇ ଭଦ୍ରବ୍ୟକ୍ତି କିଏ ଜାଣନ୍ତି ? ଆବ୍ରାହାମ୍ ଲିଙ୍କନ୍, ଆଉ କିଏ ? ତାଙ୍କ ଜୀବନର ଅନୁଶୀଳନ ହିଁ ଜଣକୁ ଜୀବନଯୁଦ୍ଧ ପାଇଁ ବେଶ୍ ଖୋରାକ୍ ଯୋଗାଇବ, ଏଥିରେ ସନ୍ଦେହ ନାହିଁ।

ଜୀବନର କଠିନ ପରିସ୍ଥିତିକୁ ସାମ୍ନା କରିବା ଲାଗି କବି ରବର୍ଟ୍ ଫ୍ରଷ୍ଟଙ୍କର ବିଚାରଧାରା କିନ୍ତୁ ଟିକେ ନିଆରା– "ଅରଣ୍ୟ ଭିତରେ ଦୁଇଟି ପଥ– ଗୋଟିଏ ଚଲାପଥ, ଆଉଟି ଅଳପଚଲା। ଆଉ ଅଳପଚଲାଟିକୁ ଆଦରିଲି ବୋଲି ମୁଁ ଆଜି ସଫଳ– ସେଇଟାହିଁ ଫରକ।" (Two roads diverged in a wood, and I– I took the one less travelled by, and that has made all the difference.) ।

କିଛି ନୂତନ ସର୍ଜନା କରିବାକୁ ହେଲେ ପ୍ରତିଟି ମଣିଷକୁ କଠିନ ସମୟ ସହ ମୁକାବିଲା କରିବାକୁ ପଡ଼ିବ। ତେବେ ଏଇ କଠିନ ସମୟଟି କ'ଣ ? ତାହା କେବଳ 'ଠିକ୍ କାମ କରିବା' ଓ 'ସହଜ କାମ କରିବା' ଭିତରେ ଚାଲିଥିବା ନିରନ୍ତର ସଂଘର୍ଷ। ତେବେ ଜଣେ ଉତ୍ତମ ଯୋଦ୍ଧା– ବୀରତ୍ୱ ପ୍ରଦର୍ଶନ କରିପାରିବା ଭଳି ମଣିଷ– ଏହାକୁ ଯେ ଟପିପାରିବ, ଏଥିରେ ସନ୍ଦେହ ନାହିଁ। ମାତ୍ର ଯେଉଁମାନେ ବିପଦରେ କାତର ହୋଇପଡ଼ନ୍ତି କିମ୍ବା ସ୍ୱଳ୍ପ ଯୁଦ୍ଧର କ୍ଷଣସ୍ଥାୟୀ ବିଜୟ ପରେ ସାରାଜୀବନ ଆତ୍ମହରା ହୋଇ ପଡ଼ନ୍ତି ସେମାନଙ୍କୁ ସତର୍କ କରାଇଦେବା ପାଇଁ ଶେକ୍ସପିଅର୍ ଥରେ କହିଥିଲେ :

ପାଇବାରେ କି ଅବା ବିଜୟ,
ଇପ୍‌ସିତ ହେଉ ପଛେ ଯେତେ;
ହେଉ ପଛେ ସ୍ୱପ୍ନର ଝଲକ,
ଝଲକେ ନିଶ୍ୱାସ ଅବା
ଅପସୃୟମାନ ସୁଖର ଫେନିଳ ?
	କ୍ଷଣିକ ରସାଇ ଯାହା ବାଧ୍ୟ କରେ
	ବହୁକ୍ଷଣ ବାହୁନିବା ପାଇଁ
	ଅବା ସର୍ବସ୍ୱାନ୍ତ କରିଦିଏ,
	କ୍ରୀଡ଼ନକ ହାତରେ ଧରାଇ
ଆଉ ଅବା କୁଞ୍ଜଟିକୁ ଦଳିଦେଇଯାଏ,
ହାତରେ ଧରାଇ
ମିଠା ଅଙ୍ଗୁରଟେ ।
	ପାଇବାରେ କି ଅବା ବିଜୟ,
	ଇପ୍‌ସିତ ହେଉ ପଛେ ଯେତେ ?

(What win I, if I gain the thing I seek ?/ A dream, a breath, a froth of fleeting Joy/ Who buys a minute's mirth to wail a week ?/or sells eternity to get a toy ?/ For one sweet grape who will the vine destroy ?)

ସତରେ ! ଗୋଟିଏ ମାତ୍ର ଅଙ୍ଗୁର ପାଇଁ ସାରା କ୍ଷେତ ଉଜାଡ଼ି ଦେବାର କଳ୍ପନା କେବଳ ବୋକା ଲୋକଟିଏ ହିଁ କରିପାରେ । ପ୍ରସଙ୍ଗକ୍ରମେ କଥାଟିଏ ମନକୁ ଆସେ । ଜଣେ ପଡ଼ୋଶୀ ଦିନେ ସନ୍ଧ୍ୟାରେ ମୁଲ୍ଲା ନାସିରୁଦ୍ଦିନଙ୍କୁ ଗୋଟିଏ ବତୀଖୁଣ୍ଟ ତଳେ ବ୍ୟସ୍ତ ହୋଇ କିଛି

ଖୋଜୁଥିବାର ଦେଖିଲେ ଓ ପଗ୍ଚରିଲେ : କ'ଣ ଖୋଜୁଛ ବନ୍ଧୁ ?

"ଗୁବିକାଠି !" କହିଲେ ନାସିରୁଦ୍ଦିନ ସେଇମିତି ଖୋଜୁଖୋଜୁ। ପଡ଼ୋଶୀ ବି ତାଙ୍କୁ ସାହାଯ୍ୟ କରିବାପାଇଁ ସେଠି ଖୋଜିବା ଆରମ୍ଭ କଲେ ଓ ପ୍ରଶ୍ନ କଲେ : "କୋଉଠି ହଜେଇଲ ଗୁବିକାଠି ?"

"ଘର ଭିତରେ"– ନିର୍ବିକାରରେ ଉତ୍ତର ଦେଲେ ସେ। ତାଙ୍କ କଥା ଶୁଣି ପଡ଼ୋଶୀ ଜଣକ "ହେ ଭଗବାନ !" କହି ଏଠି କାହିଁକି ଖୋଜୁଛନ୍ତି ବୋଲି ପଗ୍ଚରିବାରୁ, ମୁଲ୍ଲା ସଙ୍ଗେସଙ୍ଗେ ପୁଣି ଉତ୍ତରଦେଲେ :"କାରଣ ଏ ଜାଗାଟାରେ ବେଶି ଆଲୁଅ ପଡ଼ୁଛି। କେତେ ତୋଫା ଦେଖାଯାଉଛି– ନୁହେଁ !"

ଅନେକ ସମୟରେ ଆମେ ସମସ୍ତେ ଏଇଆ ହିଁ କରୁ। ସଫଳତାର ଗୁବିକାଠିଟିକୁ ଭୁଲ ଜାଗାରେ ହିଁ ଖୋଜିବାକୁ ଚେଷ୍ଟାକରୁ। ତାହା ହିଁ ବିଡ଼ମ୍ବନା ! ତେବେ ଯେଉଁଦିନ ମୋର ବନ୍ଧୁଙ୍କ ସହକର୍ମୀ ଅସରପାଟିକୁ ଗିଳିପକାଇ ଭଜାପିଆଜ ବୋଲି ପ୍ରମାଣିତ କରି ତାଙ୍କ ସଂସ୍ଥାଟିର ମର୍ଯ୍ୟାଦା ଅତୁଟ ରଖିବା ସହ ପଦୋନ୍ନତି ପାଇଲେ ସେଦିନ ହୁଏତ ସେ ଠିକ୍ ଜାଗାରେ ହିଁ ଗୁବିକାଠିଟି ଖୋଜିଥିଲେ।



# ଜଣେ ଯବନ ସମ୍ପର୍କରେ

ତାଙ୍କୁ ଜାଣିବାକୁ ଆରମ୍ଭ କଲାବେଳକୁ ସେ 'ଯବନ' ହୋଇ ସାରିଥିଲେ। ସେଇଥିପାଇଁ 'ନବରବି'ର ପ୍ରତି ସଂଖ୍ୟାରେ ତାଙ୍କର ପ୍ରବନ୍ଧ ପ୍ରକାଶ ପାଉଥିଲା : ଶୀର୍ଷକ— 'ଜାତିରେ ମୁଁ ଯବନ'। ଯେତେ ଦୂର ମନେପଡୁଛି ପ୍ରଥମ ଭେଟ ତାଙ୍କ ସହ କୁମାର ମହାନ୍ତିଙ୍କ ଦଇତାପଡ଼ା ସାହି (ପୁରୀ) ଘରେ। ଖଦଡ଼ର ଡ୍ରେନ୍‌ପାଇପ୍‌ରେ ତାଙ୍କର ବେଶ ସବୁରିଠୁ ବେଶ୍ ନିଆରା— ବକୋ ମଧ୍ୟେ ହଂସ ଯଥା। ସବୁବେଳେ ମୁଁ ତାଙ୍କର ଜଣେ ବିଦଗ୍ଧ ଶ୍ରୋତା; ସାରା ଜୀବନ ଏଇ ଭୂମିକାରେ ରହିବାକୁ ମନ କରିବି ମଧ୍ୟ।

ମଧୁର ସ୍ମୃତିର ସେଇ ବୃକ୍ଷଟିର ଶାଖାପ୍ରଶାଖା ଏବେ ପଲ୍ଲବିତ। ପ୍ରାୟ କୋଡ଼ିଏ ବର୍ଷ ତଳେ ବନ୍ଧୁ ଗିରିଜା କୁମାର ବଳିଆରସିଂ ପ୍ରକାଶ କରୁଥାନ୍ତି ଏକ କବିତା ପୁସ୍ତକ। ପ୍ରାୟ ଦଶଜଣ ତରୁଣ କବିଙ୍କର କେତୋଟି କବିତାକୁ ନେଇ ସେ ପୃଷ୍ଠବନ୍ଧଟିଏ ଲେଖିଦେବା ପାଇଁ ତାଙ୍କୁ ଅନୁରୋଧ କଲେ। ତରୁଣମାନଙ୍କ ନିଆଁର ଡହକରେ ନିଜକୁ

ସତେଜ ରଖିବାର ପ୍ରୟାସ ତାଙ୍କଠାରେ ସବୁବେଳେ ଏ ଲେଖକ ଦେଖିଛି। ହୁଏତ ସେଇ କାରଣରୁ ବହିଟିର ପୃଷ୍ଠବନ୍ଧଟିଏ ଲେଖିଦେଲେ। ଘଟଣାକ୍ରମେ ଏ ଲେଖକର ସନ୍ନିବେଶିତ କବିତାଗୁଡ଼ିକୁ ଆଉଁସୁଆଉଁସୁ ଟିକେ ବେଶି ଆଉଁସି ଦେଲେ ସେ। ପରିହାସ ଛଳରେ ଜଣେ ବନ୍ଧୁ କହିଥିଲେ "ଏ କବିତା ବହିର ସମସ୍ତ ଛାପାଖର୍ଚ୍ଚ ତମେ ଦେବା ଉଚିତ୍, କାରଣ ଚିତ୍ତଭାଇ ତମ କବିତା ଗୁଡ଼ିକୁ ବେଶି ପ୍ରଶଂସା କରିଛନ୍ତି।" ଉତ୍ତରରେ ମୁଁ ସାମାନ୍ୟ ମାତ୍ର ହସିଥିଲି ସେଦିନ। ଅବଶ୍ୟ ବେଶ୍ ଖୁସି ବି ହୋଇଥିଲି। କିଛିଦିନ ପରେ, ଦିନେ ଅପରାହ୍ନରେ ଯାଇ ପହଞ୍ଚିଲି ଭୁବନେଶ୍ୱରସ୍ଥିତ ଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରରେ। ସେଥିରେ ସେ ବୋଧହୁଏ ନିର୍ଦ୍ଦେଶକ ଥାଆନ୍ତି। ଚରିତ୍ର ଗଠନ କରିବା ସହ ଗୋଟାଏ ଶୃଙ୍ଖଳିତ ଜୀବନଯାପନ କରିବା ଲାଗି ଯାହାସବୁ ଆବଶ୍ୟକ ପଡ଼େ, ସେଇ ଅନୁଶାସନ ସେପରେ ଗ୍ଭଲିଥାଏ ବୋଲି ଶୁଣିଥିଲି। ଚିତ୍ତ ଭାଇ ମୋର ଆସିବାର ଅଭିପ୍ରାୟ ଜାଣିବାକୁ ଗ୍ଭହିଁଲେ।

:ମୋ'ର ଛୋଟ ଭାଇଟି ଘରେ ଦୁଷ୍ଟାମି କରୁଛି। ଭାବିଛି ଆପଣଙ୍କ ଅନୁଷ୍ଠାନରେ ତାକୁ ଭର୍ତ୍ତି କରିଦେବି।" ମୁଁ କହିଲି। ମୋ କଥା ଶୁଣି ସେ ହସିଲେ।

:ତମ ଭାଇଙ୍କୁ ଏଠି ରଖିବାରେ ମୋର ଆପତ୍ତି ନାହିଁ। ମାତ୍ର ତାକୁ ଗାନ୍ଧି କିମ୍ବା ଗୋପବନ୍ଧୁଟିଏ କରିବାର ଗ୍ୟାରେଣ୍ଟୀ ମୁଁ ଦେଇପାରିବିନି। ଯଦି ଆଉ କିଏ ତମକୁ ଏକଥା କହିଛି, ସେ ମିଛ କହିଛି। ଶିଶୁର ଅସଲ ଗୁରୁ ତା'ର ବାପା ମା'।" ସତକଥାଗୁଡ଼ାକୁ ସେ ଖୁବ୍ ସିଧାସଳଖ କହିପାରନ୍ତି। ସେଦିନ ତାଙ୍କର କଥାରେ ମୁଁ ଆହତ ହୋଇଥିଲେ ବି ସେଇ ସତ୍ୟତା ହିଁ ଗୋଟାଏ ଆଲୋକବର୍ତ୍ତିକା ପରି

କାମ କରିଥିଲା ପରବର୍ତ୍ତୀ ସମୟରେ ।

ଘଟଣାର କିଛିଦିନ ପରେ ଅନାମ ଗୋଷ୍ଠୀ ତରଫରୁ ନୟାହାଟ ହାଇସ୍କୁଲ୍ ପ୍ରାଙ୍ଗଣରେ ଏକ ସାହିତ୍ୟସଭାର ଆୟୋଜନ ହୋଇଥାଏ । ମୁଖ୍ୟ ପ୍ରସଙ୍ଗ ଥିଲା : ସାହିତ୍ୟ ଗାଁକୁ ଯାଉ । ଜଣେ ଆୟୋଜକ ଭାବେ ଏ ଲେଖକ ସଭା ପରିଚ୍ଚାଳନାର ଦାୟିତ୍ୱରେ ଥାଏ । ଭାଷଣ ଦେବାପାଇଁ ସେଦିନ ସ୍କୁଲ୍‌ପ୍ରାଙ୍ଗଣରେ ଯେଉଁ ମଞ୍ଚଟି ତିଆରି କରାଯାଇଥିଲା, ତା'ର ପୃଷ୍ଠପଟରେ ଅଙ୍କା ହୋଇଥିଲା ଗ୍ରାମ୍ୟପଥର ଦୃଶ୍ୟଟିଏ— ସମ୍ଭବତଃ କୌଣସି ଏକ ମଞ୍ଚସାମଗ୍ରୀ ଦୋକାନରୁ ଭଡ଼ା ସୂତ୍ରରେ ଅଣାଯାଇଥିଲା । ଏହିପରି ଏକ ପଛଭୂମିରେ ଚିତ୍ତଭାଇଙ୍କୁ ଭାଷଣ ଦେଉଥିବାର କଳାଧଳା ଫଟୋଟିଏ ଦେଖିଲେ କିଏ କାହିଁକି ଅବା ବିଶ୍ୱାସ କରିବ ଯେ ଏହି କ୍ଷୀଣକଳେବର ଜଣକ ଓଡ଼ିଶାର ଗାଁ'ଗଣ୍ଡା, ବଣଜଙ୍ଗଲ, ମାଳ ଅଞ୍ଚଳ-ଠାରୁ ଆରମ୍ଭ କରି ଭାରତର କୋଣ ଅନୁକୋଣ ଓ ଫିନ୍‌ଲାଣ୍ଡ୍, ଡେନ୍‌ମାର୍କ୍ ତଥା ଇସ୍ରାଏଲ୍‌ର ଗଳି ଉପଗଳିରେ ଘୂରି ସାରିଛନ୍ତି ବୋଲି ! ସେ ଘୂରିବା ଖାଲି ମଣିଷକୁ ଖୋଜିବା ପାଇଁ, ମଣିଷପଣିଆକୁ ସାଉଁଟିବା ପାଇଁ ।

ପୁରସ୍କାର ପାଇଁ ସେ କେବେ ଲାଳାୟିତ ନଥିଲେ କିମ୍ବା ସେଇ ଦୌଡ଼ରେ ଭାଗ ନେବା ପାଇଁ ଆଦୌ ତାଙ୍କର ଇଚ୍ଛା ନଥିଲା । ହୁଏତ ସେଇ କାରଣରୁ ଏତେ ବିଳମ୍ବରେ ତାଙ୍କୁ ଏଇ ପୁରସ୍କାର ଦେଇ ସମ୍ମାନିତ କରିବା ପାଇଁ ସାହିତ୍ୟ ଏକାଡେମୀ ସ୍ଥିର କଲେ । ତାଙ୍କୁ ପୁରସ୍କୃତ କରି 'ଏକାଡେମୀ' ନିଜକୁ ଗୌରବାନ୍ୱିତ କରିବା ସହିତ ନିଜକୁ 'ସ୍ଥାଣୁ' ଅଥବା 'ନିଷ୍କ୍ରିୟ'ର ଅପବାଦରୁ ମୁକ୍ତ କଲେ । ସରଳ ଓ ସଚ୍ଚୋଟ ରହି ଜଣେ ପୁରସ୍କୃତ ହୋଇପାରିବ— ଏକଥା ଅବଶ୍ୟ ଏଥର ପ୍ରମାଣିତ

ହେଲା । ଗୋଟିଏ ଭଲ ପୌରପାଳିକା ପରି ଏକାଡେମୀ ନିଜ ଦେହରେ ଲାଗିଥିବା ମଇଳାକୁ ସଫା କରିଥିବାରୁ ସାହିତ୍ୟିକମାନେ ଉଲ୍ଲସିତ ।

ପଞ୍ଚସ୍ତରୀବର୍ଷରେ ଏବେବି ଚିତ୍ତଭାଇଙ୍କ ମାନସିକତା କୌଣସି ଚଳଚଞ୍ଚଳ ଯୁବକଙ୍କ ଠାରୁ କମ୍ ନୁହେଁ । ତରୁଣ ସାହିତ୍ୟିକମାନଙ୍କଠାରେ ତାଙ୍କର ଅନେକ ଭରସା, ଅନେକ ସ୍ୱପ୍ନ । ପ୍ରାୟ ଏକୋଇଶ ବର୍ଷ ତଳେ ଏ ଲେଖକ ତାଙ୍କୁ ଆମନ୍ତ୍ରଣ କରିଥିଲା ଗୋଟିଏ ସାହିତ୍ୟ ଆଲୋଚନାରେ ଭାଗ ନେବା ପାଇଁ । ପ୍ରତ୍ୟୁତ୍ତରରେ ସେଦିନ ସେ ଯାହା ଏ ଲେଖକ ପାଖକୁ ଲେଖିଥିଲେ ସେଥିରୁ କିଛି ପାଠକମାନଙ୍କ ଅବଗତି ନିମନ୍ତେ ଉଦ୍ଧାର କରୁଛି–

"ଗପିବା ପାଇଁ ମୋର ମୋଟେ ଆପତ୍ତି ନାହିଁ । ମାତ୍ର ଯାହା କିଛି ହେବ, ଗପ ହିଁ ହେବା ଉଚିତ୍ । ଗପର ଆୟୋଜନ କରୁକରୁ ସଭା ହୋଇ ବସିବା ମୋଟେ ଉଚିତ ନୁହେଁ । ଅର୍ଥାତ, ଆମେ ଅଳପ ମଣିଷ ବସିବା– ପାଖାପାଖି ହୋଇ ବସିବା । ସ୍ୱାଗତ ହେବ ନାହିଁ କି, ଧନ୍ୟବାଦ ଦିଆଯିବ ନାହିଁ । ଖାଉଥିବା, ଗପୁଥିବା, ବୁଲିଯାଇଥିବା, ଗପୁଥିବା, ମୋତେ ଏଇପରି ଅଗୀତିଟା ହିଁ ସବୁଠାରୁ ଭଲଲାଗେ । ଓଡ଼ିଶାରେ ସଭା ବେଶୀ, ଆଲୋଚନା କମ୍; ଆଦାନ ପ୍ରଦାନ ତା'ଠାରୁ କମ୍ ।

"ଗତ ତିରିଶିଟା ବର୍ଷ ଓଡ଼ିଆ ସାହିତ୍ୟ ଯେଉଁ ଭୂମିକା ଗ୍ରହଣ କରିଆନ୍ତା, ସାହିତ୍ୟିକମାନେ ତାହାକୁ ପ୍ରାୟ ଜାଣିଶୁଣି ସେଥିରୁ ବଞ୍ଚିତ କରି ରଖିଛନ୍ତି । କିନ୍ତୁ ଏକଥା ସ୍ୱୀକାର ବି କିଏ କରୁଛି ? ସମସ୍ତେ ତ ଅଭିନୟ କରୁଛନ୍ତି ! ନିଷ୍ଠାଗୁଡ଼ିକ ମରିଉଡ଼ିଗଲେଣି । ଅଭିନୟଗୁଡ଼ିକ ପାରମ୍ପରିକ ଭାବରେ ସାମନ୍ତବାଦୀ ହୋଇପଡୁଛି । ଆମ ଜୟନ୍ତୀ ଉତ୍ସବ,

ବାର୍ଷିକ ଉତ୍ସବ ଓ ସେଥିକୁ ପୁଣି ପଦସ୍ଥମାନଙ୍କର ଆରାମ ସବୁଯାକ, ମିଶି ଅସଲ ଅବସରଗୁଡ଼ାକୁ ଭାରି ଅସାହିତ୍ୟିକ କରିପକାଉଛି । ମଣିଷ ହିସାବରେ ଆମର କ'ଣ ଆଉ ଅଧିକ ଭଲ କିଛି ହେଲେ ଧନ୍ଦା ନାହିଁ ? ତେଣୁ ବର୍ତ୍ତମାନ ସାହିତ୍ୟ ଜରିଆରେ ନିଜର ବକ୍ତବ୍ୟଟିକୁ ମୁକ୍ତ ଭାବରେ ଯିଏ କହିବ, ସିଏ କଦାପି କାହାର ମନୋରଞ୍ଜନ କରିପାରିବନାହିଁ । ସିଏ ପୁରସ୍କାର ବି ପାଇବ ନାହିଁ । ଏପରି କଥା କୋଉ ଦେଶରେ, କୋଉ ଯୁଗରେ ବି ହୋଇନାହିଁ ।

"ଆପଣ ଆଉ କ'ଣ ସବୁ ଲେଖିଲେଣି ? ଆମ ସାହିତ୍ୟ ଓ ଆମ ଜୀବନ ମଧ୍ୟରେ କୌଣସି ବିରୋଧ ନରହୁ, ଏପରି ଏକ ଆକାଙ୍‌କ୍ଷା ଓଡ଼ିଶା ରାଜ୍ୟରେ ଅଧିକରୁ ଅଧିକ ସାହିତ୍ୟକଙ୍କୁ ଏକତ୍ର କରିପାରିଲେ ସାହିତ୍ୟର ଗତି ବଦଳି ପାରିବ.... ।"

ଚିତ୍ତଭାଇଙ୍କ ସାହିତ୍ୟ ଓ ଜୀବନ ଭିତରେ ଥିବା ସାମଞ୍ଜସ୍ୟର ଏକ ନମୁନା ଏ ଲେଖକ ପ୍ରାୟ ପାଞ୍ଚବର୍ଷତଳେ କୋରାପୁଟର ଇନ୍ଦ୍ରାବତୀ ପ୍ରକଳ୍ପ ନିକଟସ୍ଥ ଶ୍ରୀଅରବିନ୍ଦଙ୍କ ଆଶ୍ରମରେ ଦେଖିବାକୁ ପାଇଥିଲା । ଧ୍ୟାନମନ୍ଦିର ନିକଟରୁ ଯାଇ ଯେତେବେଳେ ମୁଁ ବାହାରେ ଥିବା ପୁଷ୍କରିଣୀ ନିକଟରେ ଠିଆ ହୋଇଥିଲି, ଜଣେ ବନ୍ଧୁ ସୂଚନା ଦେଇଥିଲେ ସେଇ ପୁଷ୍କରିଣୀର ଖୋଳା କାମଟିରେ ଅନ୍ୟମାନଙ୍କ ସହ ଚିତ୍ତଭାଇ ମଧ୍ୟ ଯୋଗଦାନ କରିଥିଲେ । ଠିକ୍ ସେତିକିବେଳେ ସନ୍ଧ୍ୟାର ସୁଲୁସୁଲିଆ ପବନ ଆମ କାନ ଛୁଇଁ ଚାଲିଯାଉଥିଲା ।



# ଆମ୍ଭର ଠିକଣା

କିଛିଦିନ ତଳେ ଗୋଟିଏ ସାହିତ୍ୟ ସମାବେଶରେ ଜଣେ ମୁଗ୍ଧ ଦର୍ଶକର ଭୂମିକା ନେଇଥିଲା ଏ ଲେଖକ । କିଛି ପୁରୁଣା ବନ୍ଧୁଙ୍କୁ ଭେଟିବା, ସୁଖଦୁଃଖ ବାଣ୍ଟିବା ହିଁ ପ୍ରଧାନ ଉଦ୍ଦେଶ୍ୟ ଥିଲା । ସଭାରେ ପହଞ୍ଚିବାବେଳକୁ କାର୍ଯ୍ୟକ୍ରମ ଆରମ୍ଭ ହୋଇଯାଇଥାଏ । ସଭାର ବିଷୟବସ୍ତୁ ଥିଲା— ୨୦୨୦ ମସିହା ବେଳକୁ ବର୍ତ୍ତମାନ ଲେଖନୀ ଚାଳନା କରୁଥିବା କେଉଁ ଗାଳ୍ପିକ ଅଥବା କବି ନିଜ ଇଲାକାରେ ପ୍ରତିଷ୍ଠିତ ହୋଇସାରିଥିବେ ? ଏପରି ଏକ କଳ୍ପନା ଏଇ ଲେଖକର ମୁଣ୍ଡରେ କେବେବି ପଶିନଥିଲା ଆଗରୁ । ଏଭଳି ହିସାବନିକାଶର ଯଥାର୍ଥତା ଏ ଲେଖକ ଉପଲବ୍ଧି କରିପାରୁନଥିଲେ ବି ଯୁବ ଗାଳ୍ପିକ ଓ ଗାଳ୍ପିକାମାନଙ୍କ ମତାମତ ଶୁଣିବା ଲକ୍ଷ୍ୟରେ ସେ ଦିନଟି କଟିଗଲା । ଜଣେ ଗାଳ୍ପିକ କହିଲେ ଯେ ଏଯାବତ୍ ଗଳ୍ପ ଲେଖୁଥିବା ବ୍ୟକ୍ତିଙ୍କ ସଂଖ୍ୟା ଏଗାରଶହ ଯାଏଁ ହେବ ବୋଲି ତାଙ୍କ ପାଖରେ ହିସାବ ଅଛି । ମାତ୍ର ସେଦିନ ଏଇ

ଅଙ୍କକଷାରେ ମାତ୍ର ସାତଆଠଜଣଙ୍କ ନାଁ' ବାରମ୍ବାର ଉଠୁଥିଲା । ସେମାନଙ୍କ ମଧ୍ୟରୁ ପ୍ରାୟ ପାଞ୍ଚ କିମ୍ବା ଛଅଜଣ ଏଇ ସଭାରେ ସ୍ୱୟଂ ବିଜେ ଥିଲେ । ସେମାନେ ପରସ୍ପରକୁ ପ୍ରଶଂସାରେ ପୋତି ପକାଉଥିଲେ । ସହୃଦୟତାର ଏଇ ସୁନ୍ଦର ସମାବେଶଟି ଦେଖି 'ସ୍ୱର୍ଗ-ନର୍କ' ଗପଟି ହଠାତ୍ ମନେପଡ଼ିଗଲା । ଗଳ୍ପଟି ଏଇପରି : ଥରେ ନର୍କର ଅଧିବାସୀମାନେ ବିକ୍ଷୋଭ କଲେ ଯେ ସେମାନଙ୍କ ପ୍ରତି ଏଯାବତ୍ ଖୁବ୍ ଅତ୍ୟାଗ୍ରର କରାଯାଇଛି । ଏପରିକି ସେମାନଙ୍କୁ ଅନେକ ସୁସ୍ୱାଦୁ ଖାଦ୍ୟ ଯ୍ୟା' ଭିତରେ ପରିବେଷଣ କରାଯାଇଥିଲେ ମଧ୍ୟ ସେମାନଙ୍କ ହାତର କହୁଣୀ ପାଖର ଖଞ୍ଜା କାଢ଼ି ନିଆଯାଇଥିବାରୁ ସେମାନେ ହାତ ବଙ୍କା କରିପାରୁନାହାଁନ୍ତି କିମ୍ବା ଖାଦ୍ୟ ଖାଇ ପାରୁନାହାଁନ୍ତି । ସେମାନଙ୍କ ସ୍ମାରକପତ୍ର ପାଇ ବ୍ରହ୍ମା ତୁରନ୍ତ ଗୋଟିଏ ତଦନ୍ତ କମିସନ୍ ବସାଇଲେ ଏବଂ ସବିଶେଷ ବିବରଣୀ ଏକସପ୍ତାହ ମଧ୍ୟରେ ଦେବାକୁ ନିର୍ଦ୍ଦେଶ ଦେଲେ ।

ନିର୍ଦ୍ଦେଶାନୁଯାୟୀ ଇନ୍‌କ୍ୱାରୀ କମିଟୀର ସଭ୍ୟବୃନ୍ଦ ପ୍ରଥମେ ନର୍କଲୋକକୁ ଯାଇ ଅଭିଯୋଗର ସତ୍ୟାସତ୍ୟ ସମ୍ପର୍କରେ ଅବଧାରଣା ନେବାଲାଗି ବିଭିନ୍ନ ବ୍ୟକ୍ତିଙ୍କ ସହ ସାକ୍ଷାତ କଲେ । ଏବଂ ଅଭିଯୋଗ ଅମୂଳକ ନୁହେଁ ବୋଲି ନିଶ୍ଚିତ ହେଲେ । ପ୍ରସଙ୍ଗକ୍ରମେ, ସେମାନେ ସ୍ୱର୍ଗଲୋକରେ ମଧ୍ୟ ପହଞ୍ଚିଲେ ଏବଂ ବିସ୍ମିତ ହେବାକୁ ବାଧ୍ୟ ହେଲେ । କାରଣ, ସ୍ୱର୍ଗଲୋକରେ ବି କାହାରି ହାତର କହୁଣୀ ପାଖରେ ଖଞ୍ଜା ନଥିଲା । ସେମାନେ ମଧ୍ୟ ନିଜ ହାତଟିକୁ ନିଜ ପାଟି ପାଖକୁ ନେଇ-ପାରୁନଥିଲେ । ମାତ୍ର ଫରକ୍ ଏତିକି ଥିଲା ଯେ ନର୍କର ଲୋକେ ସୁସ୍ୱାଦୁ ଖାଦ୍ୟ ସାମ୍ନାରେ ମୁହଁ ଶୁଖାଇ ଘଣ୍ଟାଘଣ୍ଟା ବସି ରହିଥିଲେ ହେଁ ସ୍ୱର୍ଗର ଲୋକେ ନିଜ ହାତରେ ଖାଦ୍ୟ ନେଇ ସାମ୍ନାର ଜଣେ ସହଯୋଗୀଙ୍କୁ ଖୁଆଇ ଦେଉଥିଲେ । ଏପରି ପରସ୍ପରକୁ ସାହାଯ୍ୟ କରିବା ଫଳରେ

ସେମାନଙ୍କ ଭିତରେ ସମନ୍ୱୟ ଓ ସମ୍ପ୍ରୀତି ପ୍ରତିଷ୍ଠା ହୋଇପାରିଥିଲା ।

ଅବଶ୍ୟ ପରସ୍ପରକୁ ଅହେତୁକ ପ୍ରଶଂସାରେ ଉବୁଟୁବୁ କରାଉଥିବା ଗାଳ୍ପିକ ବନ୍ଧୁମାନେ ଗଳ୍ପଟିର ମର୍ମ ବୁଝିଲେ କି ନାହିଁ, ତାହା ଏ ଲେଖକ ଜାଣେ ନାହିଁ । ଅତିକ୍ରାନ୍ତ ସନ୍ଧ୍ୟାରେ ସଭା ଶେଷ ହେବାପରେ ଜଣେ ଚିତ୍ରକରଙ୍କ ସହ ସାଥୀ ହୋଇ ଯିବାକୁ ହେଲା । ଏଣୁତେଣୁ ନାନା କଥା ହେବା ଭିତରେ ଚିତ୍ରକର ମହୋଦୟ ଜଣେ ବରିଷ୍ଠ ଲେଖକଙ୍କ ଘରକୁ ଯିବା ଲାଗି ଇଚ୍ଛା ପ୍ରକାଶ କଲେ । କହିବା ବାହୁଲ୍ୟ, ସେତେବେଳକୁ ଆମେ ଦୁହେଁ ସେଇ ଲେଖକଙ୍କ ଘର ସାମ୍ନାରେ ହିଁ ପହଞ୍ଚି ସାରିଥାଉ । କେବଳ ଗେଟ୍ ଖୋଲି ଭିତରକୁ ଯିବା ଯାହା ବାକି ଥାଏ । ତାହାହିଁ ହେଲା । ଚିତ୍ରକରଙ୍କୁ ଶୁଭେଚ୍ଛା ଜଣାଇଲେ ଲେଖକଙ୍କ ପତ୍ନୀ । ଶୁଣିଲୁ, ଲେଖକ ମହୋଦୟ ନିଜର ନିଭୃତ କୋଠରୀଟିରେ କମ୍ପ୍ୟୁଟର୍ ସହିତ ଚେସ୍ ଖେଳିବାରେ ବ୍ୟସ୍ତ ଅଛନ୍ତି । ଆମ ଦୁଇଜଣଙ୍କୁ ଡ୍ରଇଙ୍ଗ୍ ରୁମ୍‌ରେ ବସାଇ ପତ୍ନୀ ମହୋଦୟା ଘର ଭିତରକୁ ଗଲେ ଖବର ଦେବା ଲାଗି ।

ସମୟକ୍ରମେ ସଦଳବଳେ ଚା' ଆସିଲା । ପରେପରେ ଲେଖକ ମଧ୍ୟ । ନମସ୍କାର ପର୍ବ ସରିବା ପରେ ଚା' ପିଉପିଉ ଲେଖକ ମହୋଦୟ ମୋତେ ଚାହିଁ ପଚାରିଲେ : ତମ ନାଁ' କ'ଣ ? ପ୍ରାୟ କୋଡ଼ିଏ ବର୍ଷ ତଳେ ଏକଦା ତାଙ୍କୁ ଗୋଟିଏ ସଭାର ସଭାପତିତ୍ୱ କରିବାପାଇଁ ଆମନ୍ତ୍ରଣ କରି ସଫଳ ହୋଇଥିଲି । ତା'ପରେ ଭେଟ ହୋଇନାହିଁ । ନାଁ' ଭୁଲିଯିବା ସ୍ୱାଭାବିକ । ଅଗତ୍ୟା ନିଜର ନାଁ' ପ୍ରକାଶ କଲି ।

"ଆରେ, ତମକୁ ମୁଁ କଙ୍ଗ୍ରାଚୁଲେଶନ୍ କରିବାକୁ ଚାହୁଁଥିଲି । ତମର ଗଳ୍ପ ମୁଁ ବରାବର ପଢୁଛି । ବେଶ୍ ଭଲ ବି ଲାଗୁଛି । ତମର ଠିକଣା ମୁଁ ପାଇ ପାରୁନଥିଲି .... ।" ସେ ମୁଗ୍ଧ ହୋଇ କହି ଚାଲିଥିଲେ ।

ସେ ଥିଲେ ଓଡ଼ିଆ ସାହିତ୍ୟ-କୋଣାର୍କର ବିଶିଷ୍ଟ ବିନ୍ଧାଣୀ ଗାଳ୍ପିକ ଓ ଔପନ୍ୟାସିକ ଶାନ୍ତନୁ କୁମାର ଆଚାର୍ଯ୍ୟ । ତାଙ୍କଠାରୁ ନିଜର ପ୍ରଶସ୍ତି ଶୁଣି ମୁଁ ସ୍ଥାଣୁ ପାଲଟିଗଲି ଯେମିତି !

ସାରାଦିନ ଅହେତୁକ ଚର୍ଚ୍ଚାର ବିଷାଦରେ ବୁଡ଼ିଯାଉଥିବାବେଳେ ଜଣେ ବରିଷ୍ଠ ଲେଖକଙ୍କ କଥା ମୋ'ର ମନେ ପଡ଼ିଲା । ସେ ବରାବର କହୁଥିଲେ : ''ତୁମେ ଯାହା ଲେଖୁଛ ପ୍ରକୃତରେ ତାହା 'ତୁମେ' ଲେଖୁ ନାହଁ । ଯଦି 'ତୁମେ' ସେ ସବୁ ଲେଖୁଛ ବୋଲି ଭାବୁଛ, ତେବେ ଦଶବର୍ଷ ତଳେ ଲେଖିଥିବା ଅବିକଳ ସେଇମିତି ଲେଖାଟିଏ ଆଉ ଲେଖିପାରୁନାହଁ କାହିଁକି ?'' ଏସବୁ କହିବାର ଏକମାତ୍ର ଉଦ୍ଦେଶ୍ୟ ହେଉଛି ଜଣେ କେବଳ ଲେଖିପାରେ ଯେତେବେଳେ ତାକୁ 'କାଳିସୀ' ଲାଗେ, ତା' ଉପରେ କେହି 'ସବାର୍' ହୁଏ ଅଥବା, ତାକୁ ଯଦି ଲେଖା 'ମାଡ଼େ' । ଲେଖାଟି ଲେଖିଲାବେଳେ ସେ ନିଜ ଅକ୍ତିଆରରେ ନଥାଏ । ପ୍ରତି ଲେଖକ ପାଖରେ 'ଲେଖକୀୟ ଆତ୍ମା' ଆତ୍ମଗୋପନ କରିଥାଏ । ସେଇ 'ଲେଖକୀୟ ଆତ୍ମା' ଶବ୍ଦର ନଈରେ ନିଜେ ମଙ୍ଗୁଆଳ ସାଜିଥାଏ । କେଉଁ ବିଶିଷ୍ଟ ଅଲୌକିକ କାରଣ ଯୋଗୁଁ ମଣିଷ ଭିତରେ ଲେଖକୀୟ ସତ୍ତାଟି ନୀଡ଼ ରଚନା କରେ ତା'ର ଉଦ୍‌ଘାଟନ ଏଯାବତ୍ ମଣିଷ କରିପାରିନି । ସେ ଆତ୍ମାର ଠିକଣା କ'ଣ ? ତେବେ ନିଜେ ଲେଖୁଛି ବୋଲି ଗର୍ବ କରିବା ଏକ ତୁଚ୍ଛ ଅହମିକାର ପରିପ୍ରକାଶ ମାତ୍ର ।''

ସେଇ କାରଣରୁ, ସେଦିନ ଶାନ୍ତନୁ ବାବୁଙ୍କଠାରୁ ନିଜ ସମ୍ପର୍କରେ ଶୁଣି ନିର୍ବାକ ହୋଇଯିବା ଛଡ଼ା ଆଉ କ'ଣ କରିପାରିଥାନ୍ତି ?



# ଥେରାପୀ

ଥରେ ବିଶିଷ୍ଟ ଲେଖକ ଖୁସ୍‌ଓ୍ୱନ୍ତ୍ ସିଂଙ୍କର ଏକ ଲେଖାରେ ଜଳଚିକିତ୍ସା ବା 'ଓ୍ୱାଟର୍ ଥେରାପୀ' ସମ୍ପର୍କରେ ପଢ଼ିବାର ସୁଯୋଗ ମିଳିଥିଲା। ସେଥିରେ ଦର୍ଶାଯାଇଥିଲା, ଯଦି ଜଣେ ପ୍ରତିଦିନ ସକାଳେ ଶଯ୍ୟାତ୍ୟାଗ ପରେ ପ୍ରଥମେ ଅନ୍ୟ କୌଣସି କାର୍ଯ୍ୟ କରିବା ଆଗରୁ ଏକଲିଟର୍ ଦୁଇଶହ ତିରିଶ ମିଲିଲିଟର୍ ପାଣି ପିଇବ ତେବେ ବିନା ଚିକିତ୍ସାରେ ପେଟର ବାୟୁରୋଗଠାରୁ ଆରମ୍ଭ କରି ମୁଣ୍ଡବିନ୍ଧା ଆଦି ପ୍ରାୟ ଗ୍ୱାଳିଶିଟି ରୋଗ ଆଦୌ ହେବ ନାହିଁ। ଏହି ଚିକିତ୍ସା ଫଳରେ ମଣିଷ ଶରୀରର ଅନେକ ସୁପ୍ତ ସ୍ନାୟୁ କିପରି ହଠାତ ଜୀବନ୍ୟାସ ପାଇଥାନ୍ତି ତା'ର ସୁନ୍ଦର ବର୍ଣ୍ଣନା ଶ୍ରୀ ସିଂ ଉକ୍ତ ଲେଖାରେ କରିଥିଲେ ଏବଂ ଏଇ ଜଳଚିକିତ୍ସା ଦ୍ୱାରା ସେ ନିଜକୁ କିପରି କର୍ମଠ ରଖିପାରିଛନ୍ତି ତାହା ମଧ୍ୟ ଉକ୍ତ 'ସ୍ତମ୍ଭ'ରେ ସୂଚିତ କରିଥିଲେ।

ଏହି ଲେଖାଟି ପଢ଼ି ଏ ଲେଖକ ସେ ସମୟରେ ଭ୍ରୂକୁଞ୍ଚନ କରିଥିଲା ଅବଶ୍ୟ । ଭାବିଥିଲା, ସାହିତ୍ୟ ସମ୍ପର୍କୀୟ ଲେଖା ଛାଡ଼ି ହଠାତ୍ ଶ୍ରୀ ସିଂ ଆମମାନଙ୍କୁ ଡାକ୍ତରୀ ବିଦ୍ୟା ପଢ଼ାଉଛନ୍ତି କାହିଁକି ? ମାତ୍ର ଏବେ ବିଭିନ୍ନ ପତ୍ରପତ୍ରିକାରୁ 'ଥେରାପୀ' ସମ୍ପର୍କୀୟ ମନ୍ତବ୍ୟ ପଢ଼ିବାପରେ ସେଇ ଧାରଣାକୁ ଆପାତତଃ ବଦଳାଇବାକୁ ପଡୁଛି ।

ଏବେ କିଛିଦିନ ତଳେ ବାଙ୍ଗାଲୋର ସହରର ଜଣେ ଭଦ୍ରମହିଳା (ତ୍ରିପୁରା କାଶ୍ୟପ୍) ଏଠାରେ ଏକ ଦୁଇଦିନିଆ କର୍ମଶାଳାରେ ଯୋଗଦେଇ ତାଙ୍କ ବିଗ୍ୱର ଓ ଅଭିଜ୍ଞତା ପ୍ରକାଶ କରିଛନ୍ତି । କର୍ମଶାଳାର ବିଷୟବସ୍ତୁ ଥିଲାः ନୃତ୍ୟ ଚିକିତ୍ସା– ଏକ ଆରୋଗ୍ୟ କଳା (Dance Therapy– A Healing Art) । ମାନସିକ ବିକୃତି ଥିବା ଶିଶୁମାନଙ୍କ ପ୍ରକାଶଭଙ୍ଗୀ (Expression) ଏବଂ ଭାବ-ପ୍ରଦାନର (Communication) ଉନ୍ନତି ପାଇଁ ଏଇ ନୃତ୍ୟ ଚିକିତ୍ସା କିଭଳି ସହାୟକ ହେଇପାରିବ– ତାହା ହିଁ ଏହି କାର୍ଯ୍ୟକ୍ରମର ମୁଖ୍ୟ ବିଷୟ ଥିଲା । ତାଙ୍କର ଯୁକ୍ତି ଥିଲା– ନୃତ୍ୟକଳା ମଣିଷର ଅନ୍ତରର ଭାବପ୍ରକାଶ କରିବାରେ ଅତ୍ୟନ୍ତ ସହାୟକ ହୋଇଥାଏ । ଏହାଛଡ଼ା ଭାରତୀୟ ଲୋକନୃତ୍ୟ ଓ ଶାସ୍ତ୍ରୀୟନୃତ୍ୟରେ ଶରୀର, ମନ ଓ ଆତ୍ମା ଭିତରେ ସମନ୍ୱୟ ଆଣିପାରିବା ଭଳି ଶକ୍ତି ରହିଛି ବୋଲି ସ୍ୱୀକାର କରିଥିଲେ । ନିଜେ ଜଣେ କୁଶଳୀ ନୃତ୍ୟାଙ୍ଗନା ଶ୍ରୀମତୀ କାଶ୍ୟପ୍ । ତାଙ୍କ କହିବା ଅନୁସାରେ, ନୃତ୍ୟରେ 'ଅଭିନୟ' ହିଁ ସବୁଠୁ ଶ୍ରେଷ୍ଠ । ମଣିଷର ଶରୀର ଓ ମନକୁ ଏକାଗ୍ର ଭାବେ ଉପଯୋଗ କରିବାରେ ଏହି ନୃତ୍ୟ ଚିକିତ୍ସା ଅନ୍ଧ, ମୂକ ଓ ବଧିର, ମାନସିକ ବିକୃତ ଶିଶୁମାନଙ୍କ ପାଇଁ ବ୍ୟବହାର କରାଯାଇପାରିବ ବୋଲି ସେ ଯେ କେବଳ

ଦାବି କରନ୍ତି ତା' ନୁହେଁ; ଏହି ଚିକିତ୍ସାପଦ୍ଧତି କିପରି ତାଙ୍କ ମୁଣ୍ଡରେ ପଶିଲା ତାହାର ଏକ ବର୍ଣ୍ଣନା ସେ ଦିଅନ୍ତି । ଥରେ ସକାଳେ ତିନିଜଣ ଅନ୍ଧ ବାଳକ ବଂଶୀ ବଜାଉଥିବାର ସେ ଦେଖିଲେ । ଏଇଠାରୁ ଶ୍ରୀମତୀ କାଶ୍ୟପଙ୍କୁ ନୃତ୍ୟ ଚିକିତ୍ସା ପାଇଁ ମିଳିଲା ଅଫୁରନ୍ତ ପ୍ରେରଣା । ସେ ଭାବିଲେ : "ଯଦି ବଂଶୀସ୍ୱନ ସେଇ ଅନ୍ଧବାଳକକୁ ଆନନ୍ଦ ଦେଇପାରିଲା, ତେବେ ଅନ୍ୟର ଯନ୍ତ୍ରଣା ଉପଶମ କରିବାରେ ଏଇ ଧ୍ୱନିକୁ କାହିଁକି ବ୍ୟବହାର କରାଯାଇନପାରିବ ?"

ଧ୍ୱନି କଥା ପଡ଼ିଲେ ସ୍ୱତଃ ସଂଗୀତ ହିଁ ମନକୁ ଆସିଯାଏ । ସଂଗୀତର ଶକ୍ତି ସମ୍ପର୍କରେ କଳନା କରିବାକୁ ଯାଇ ଆମର ପ୍ରାଚୀନ ତଥା ଶାସ୍ତ୍ରୀୟ ରାଗଗୁଡ଼ିକୁ ଉଦାହରଣ ଭାବେ ନିଆଯାଇପାରେ । ରାଗ 'ଦୀପକ' ଜରିଆରେ ଯଦି ଦୀପ ଜଳାଇ ଦିଆଯାଇପାରେ; ଅଥବା 'ମେଘ ମହ୍ଲାର' ରାଗ ଯୋଗୁଁ ବର୍ଷା ସୃଷ୍ଟି କରାଯାଇପାରେ; ତେବେ ସଂଗୀତର ମୂର୍ଚ୍ଛନାକୁ ନେଇ 'ଥେରାପୀ' କରାଯାଇପାରିବନି କିଆଁ ? ଏକଦା ଜଣେ ଶାସ୍ତ୍ରୀୟ ସଂଗୀତଜ୍ଞଙ୍କ ସହ ଭେଟ ବେଳେ ଏ ଲେଖକ ଜାଣିବାକୁ ପାଇଥିଲା ଯେ, ସଂଗୀତର ମୂର୍ଚ୍ଛନାକୁ ନେଇ ଏବେ ଏପରି ପ୍ରୟୋଗ ଆରମ୍ଭ ହୋଇଗଲାଣି– ଯା' ଫଳରେ ଗାଈଟିଏ ଅଧିକ କ୍ଷୀର ଦେଇପାରୁଛି ଏବଂ ବୃକ୍ଷରେ ପୂର୍ବାପେକ୍ଷା ବେଶି ଫଳ ମଧ୍ୟ ଧରୁଛି ।

କେବଳ ପ୍ରାଚ୍ୟ ନୁହେଁ ପାଶ୍ଚାତ୍ୟ ସଂଗୀତର ମଧ୍ୟ ଅନୁରୂପ ପ୍ରଭାବ ରହିଛି । ପ୍ରସିଦ୍ଧ ବେହେଲାବାଦକ ସ୍ୱର୍ଗତଃ ୟେହୁଦି ମେନୁହିନ୍‌ଙ୍କ ସଂଗୀତ-ଜୀବନକୁ ପର୍ଯ୍ୟାଲୋଚନା କଲେ ଆମେ ଏହା ସହଜରେ ବୁଝି-

ପାରିବା । ସାତବର୍ଷ ବୟସରେ ବେହେଲା ବଜାଇ ଏକଦା ଏଇ ବିସ୍ମୟ-ବାଳକ ସାନ୍‌ଫ୍ରାନ୍‌ସିସ୍‌କୋ ସହରର ସମବେତ ଶ୍ରୋତାମାନଙ୍କୁ ଚକିତ କରିଦେଇଥିଲେ । କ୍ରମେ ଏହି ବିସ୍ମୟ-ବାଳକ ନିଜକୁ ପ୍ରତିଷ୍ଠିତ କରନ୍ତି ବିଂଶ ଶତାବ୍ଦୀର ଜଣେ ପ୍ରଭାବଶାଳୀ ସଂଗୀତଜ୍ଞ ରୂପେ । ନିଜ ଆଦର୍ଶକୁ ଅଧିକ ପ୍ରସାରିତ କରିବା ଲାଗି ୧୯୬୩ରେ ସେ ପ୍ରତିଷ୍ଠା କରନ୍ତି ଏକ ସଂଗୀତ ବିଦ୍ୟାଳୟ । ଲଣ୍ଡନ୍ ନିକଟସ୍ଥ ଏଇ ବିଦ୍ୟାଳୟରେ କେବଳ ବେହେଲା ଶିକ୍ଷା ଦିଆଯାଏ ନାହିଁ । ସଂଗୀତ ଅଭ୍ୟାସ ପରେପରେ ସେଠାକାର ଛାତ୍ରମାନଙ୍କୁ କଠୋର ଶାରୀରିକ ବ୍ୟାୟାମ କରିବାକୁ ପଡ଼ିଥାଏ ପ୍ରାୟ ପ୍ରତିଦିନ । ସାଂସ୍କୃତିକ ପରମ୍ପରା ଓ ଶାରୀରିକ ବ୍ୟାୟାମ ଉପରେ ଗୁରୁତ୍ୱ ଦେଉଥିବା ସାର୍ ୟେହୁଦି ଥରେ କହିଥିଲେ : "ସଂଗୀତ ହେଉଛି ଏକ ଚିକିତ୍ସାପ୍ରଣାଳୀ । ଭାବପ୍ରତିଷ୍ଠା ନିମନ୍ତେ ଏହା ହେଉଛି ଶବ୍ଦଠାରୁ ଅନେକ ବେଶି ଶକ୍ତିଶାଳୀ, ଅନେକ ବେଶି ଦ୍ରୁତ ଏବଂ ଅନେକ ବେଶି ଫଳପ୍ରଦ" (Music is a therapy. It's a means of communication far more powerful than words, far more immediate, far more effective) । ତା' ନ ହୋଇଥିଲେ ମାତ୍ର ନଅବର୍ଷ ବୟସରେ ସିସ୍ଟିନେ ଗ୍ୱପେଲ୍‌ରେ ବେହେଲା ବାଦନ କରି ବିଶ୍ୱରେ ଶାନ୍ତି ପ୍ରତିଷ୍ଠା କରିବାକୁ ମେନୁହିନ୍ ସ୍ୱପ୍ନ ଦେଖି ନ ଥାନ୍ତେ ।

ଏତେ ସବୁ କଥା କହିବାବେଳେ ସାହିତ୍ୟ କଥା ଆମେ ପାସୋରି ଯିବା ଠିକ୍ ହେବ ନାହିଁ । ଯେଉଁମାନେ 'ସାହିତ୍ୟାକ୍ରାନ୍ତ' ସେମାନେ ନିଶ୍ଚୟ ଅନୁଭବ କରିଥିବେ ବୁଡ଼ିଯାଉଥିବା ବେଳେ ସାହିତ୍ୟ ସେମାନଙ୍କୁ କିପରି ବଞ୍ଚାଇ କୂଳ ପାଖରେ ପହଞ୍ଚାଇବାର ଚେଷ୍ଟା କରିଛି ।

ନିଃସଙ୍ଗତାର ଜଘନ୍ୟ ହତ୍ୟାକାରୀ ଭାବେ ସାହିତ୍ୟର ଯେ ବଦ୍‌ନାମ ଅଛି, ଏ କଥା ଅନେକ ବରିଷ୍ଠ ସାହିତ୍ୟରଥୀ ସ୍ୱୀକାର କରିଛନ୍ତି । ପ୍ରାୟ ଦୁଇ ଦଶନ୍ଧି ତଳେ ପ୍ରବୀଣ କଥାକାର କୃଷ୍ଣପ୍ରସାଦ ଗୋଟିଏ ନିରୋଳା ମୁହୂର୍ତ୍ତରେ କହିଥିଲେ– "ଅବସର ନେବାପରେ (ଯେଉଁମାନେ ଚାକିରି କରନ୍ତି) ଯେତେବେଳେ ତୁମ ପାଖରେ ତୁମର ପିଲାଏ କିମ୍ବା ତୁମ ସ୍ତ୍ରୀ ଅଥବା ନାତିନାତୁଣୀମାନେ ରହୁନଥିବେ, ସେତେବେଳେ ଏଇ ସୃଜନ କ୍ରିୟାଟି ତୁମକୁ ଗୋଟିଏ ବିପର୍ଯ୍ୟୟରୁ ବଞ୍ଚେଇ ରଖିବ ।"

କଥାଟି ଅନେକାଂଶରେ ସତ, ଗୋଟାଏ ବିପନ୍ନ ପୃଥିବୀରେ ସାହିତ୍ୟାକ୍ରାନ୍ତଙ୍କ ପାଇଁ ଯା'ଠାରୁ ବଳି ସୁଖବର କ'ଣ ଥାଇପାରେ ?



# ସୃଜନ ଓ କୁଜନ

ଏକଦା ଜଣେ ବିଶିଷ୍ଟ ଚିତ୍ରଶିଳ୍ପୀ କାନ୍‌ଭାସ୍ ଉପରେ ଆଙ୍କିବାରେ ନିମଗ୍ନ ଥିବା ସମୟରେ ହଠାତ୍ ଗ୍ୱେରଟିଏ ତାଙ୍କ ଘର ଭିତରେ ତା'ର ପେସା ସୁରୁ କରିଦେଲା । ଗ୍ୱେରଟିକୁ ଦେଖିପାରି ଘରର ପରିଗ୍ୱରିକା ଚିତ୍କାର କଲା । ଚିତ୍ରଶିଳ୍ପୀଙ୍କର ଧ୍ୟାନ ଭଗ୍ନ ହେଲା । ହେଲେ, ଗ୍ୱେରଟି ଦ୍ରୁତ ଗତିରେ ପଳାଇ ଯାଉଥିବାର ଦେଖି ତା' ପଛରେ ଅନୁଧାବନ କରିବେ କ'ଣ, ଶିଳ୍ପୀ ସେଇ ଗ୍ୱେରଟିର ଚିତ୍ରଟିଏ ଆଙ୍କିବାରେ ଲାଗିପଡ଼ିଲେ । କିଛି ସମୟ ପରେ ସେଇ ଚିତ୍ରଟିକୁ ନେଇ ସେ ନିଜେ ନିକଟସ୍ଥ ପୋଲିସ୍ ଷ୍ଟେଶନ୍‌କୁ ଗଲେ । ସେଠାରେ ଏତଲା ଦେବାପରେ ପୋଲିସ୍ ଗ୍ୱେରର ଚେହେରା ସମ୍ପର୍କରେ ଶିଳ୍ପୀଙ୍କୁ ପ୍ରଶ୍ନ କରନ୍ତେ ଶିଳ୍ପୀ ତାଙ୍କ ଦ୍ୱାରା ଅଙ୍କିତ ଚିତ୍ରଟି ଦେଖାଇଲେ । ମାତ୍ର ଚିତ୍ରଟି ଦେଖିବାପରେ ଶିଳ୍ପୀ ବ୍ୟଙ୍ଗ କରୁଛନ୍ତି ଭାବି ପୋଲିସ୍ ତାଙ୍କ ଉପରେ ରାଗିଗଲେ । କାରଣ, ଶିଳ୍ପୀଙ୍କ ଦ୍ୱାରା ଅଙ୍କିତ ଚିତ୍ରଟି ଗ୍ୱେର କ'ଣ, କୌଣସି ମଣିଷର ବି ନଥିଲା— ଚିତ୍ରଟି ଥିଲା ଗୋଟିଏ ଥୁଣ୍ଟାଗଛର !

ଥୁଣ୍ଟାଗଛ ମଣିଷର ଅସହାୟତା ତଥା ଅକ୍ଷମତାବୋଧକୁ ଦର୍ଶାଇଥାଏ । କେଉଁ ପରିସ୍ଥିତିରେ ପଡ଼ିଲେ ଜଣେ ଗ୍ଲେଟ୍ରି କରିବା ଲାଗି ପଦାକୁ ବାହାରେ ସେ କଥା ବୋଧେ ଚିତ୍ରଶିଳ୍ପୀଙ୍କୁ ଜଣାଥିଲା ଆଗରୁ ।

ଏତେସବୁ କଥାର ପ୍ରୟୋଜନ ହେଉଚି, ସମ୍ପ୍ରତି କବି ସତ୍ୟନାରାୟଣ ଗନ୍ତାୟତଙ୍କ ପ୍ରକାଶିତ କବିତା ସଂକଳନ 'ଥୁଣ୍ଟାଗଛ' ପଢ଼ିବା ପରେ । ବହିଟିର ଉନ୍ମୋଚନ ଉତ୍ସବରେ ବି ଏ ଲେଖକ ଉପସ୍ଥିତ ଥିଲା । ଚଉଷଠିଟି କବିତାର ସମାହାରରେ 'ଥୁଣ୍ଟାଗଛ' ବେଶ୍ ପଲ୍ଲବିତ । କବିତାଗୁଡ଼ିକରେ ଦୁର୍ବୋଧତା ଓ ଅବୋଧତାର ଛିଟା ପ୍ରାୟତଃ ନାହିଁ । ପଢ଼ିବାକୁ ଓ ପଢ଼ିସାରି ବୁଝିବାକୁ ସେଥିପାଇଁ ଆଦୌ ମସ୍ତିଷ୍କ ବ୍ୟାୟାମର ଅପେକ୍ଷା ରଖାଯାଏ ନାହିଁ । ସରଳ ଓ ସିଧା କହିବାର ପ୍ରକାଶଭଙ୍ଗୀ ସାମ୍ପ୍ରତିକ ଧାରାର ଏକ ବିଶିଷ୍ଟ ଅଙ୍ଗ ବୋଲି ଗ୍ରହଣ କରାଯାଇଥିବା-ବେଳେ କବି ନିଜକୁ ବ୍ୟକ୍ତ କରିବାରେ ସଫଳ ହୋଇଛନ୍ତି ବୋଲି ମନେହୁଏ । କାଳେକାଳେ କବି ନିଜ ଜୀବନର ଅମୃତକୁ ପରସିଥାଏ ମୋହିନୀ ବେଶରେ, ତା'ର ପାଠକ ସାମ୍ନାରେ । ସମୟର କାଠଗଡ଼ାରେ ନିଜେ ଠିଆହୋଇ ଅନ୍ୟକୁ ସଫେଇଦେବାରେ ଆଦୌ କାର୍ପଣ୍ୟ ନଥାଏ ତା'ର । ହୁଏତ ସେଇ କାରଣରୁ କବିତା ବହିଟିର ସ୍ୱଗତୋକ୍ତିରେ ସେ କହିଛନ୍ତି :

"ତଥାପି ସ୍ୱପ୍ନ
କୃଜନର
ସୃଜନର !
କାଳେ
କାଠୁରିଆର ଗ୍ଲେଟ
ବସିବା ଆଗରୁ
ବର୍ଷି ଯାଇଥିବ

ଅସରାଏ ଆପଣାପଣ
କଅଁଳି ଉଠିଥିବ
ପତ୍ରଟିଏ ଛନଛନ !
ବେଶ୍ କିଛି ଥୁଣ୍ଟାଗଛ ପରି
ଏଇ ମୋ ଜୀବନ !

ବହିଟିର ସବୁଠୁ ଛୋଟ କବିତାଟି– ଯାହା ମଣିଷର ଚେତନାକୁ ଚହଲାଇ ଦେବାରେ ଖୋରାକ୍ ଯୋଗାଏ– ସେଇଟି ହେଉଛିଃ

ତୁଳିତଳ୍ପ ଶଯ୍ୟା ପରେ
ଯା' ଆଖିକୁ ସହଜରେ
ନିଦ ଆସେ ନାଇଁ
ଛଅଖଣ୍ଡି କାଠ ପରେ
ଦେଖ ସିଏ କେଇମିତି
ପଡ଼ିଛି ଘୁମେଇ । ('ମୃତ୍ୟୁ'– ପୃଷ୍ଠା ୨୯)

ଆଉ ଯେଉଁ କେତୋଟି କବିତା ମନକୁ ସ୍ପର୍ଶକରେ ତା' ଭିତରେ ଅଛନ୍ତି 'ଥୁଣ୍ଟାଗଛ', 'ଜୀବନ', 'ଡାକବାଲା', 'ଲଢ଼େଇ', 'ବଲ୍‌ବ୍' ଓ ଆହୁରି ଅନେକ । ତେବେ ଶେଷ କବିତା 'ରାତି ପାହିଲାଣି'ରେ ନୂତନ କଥ୍ୟର ଅଭାବ ଅଥବା ପ୍ରଚଳିତ ବକ୍ତବ୍ୟର ପୁନଃରୁଚ୍ଚାରଣ ଏ ଲେଖକକୁ ନିରାଶ କରିଛି । ତେବେ ସରଳ ଭାବେ, ମାପିଚୁପି  ଅସଲ କଥାଟା ଯେ କୁହାଯାଇପାରେ, ସେ କୌଶଳ କବି ଭଲଭାବେ ଜାଣନ୍ତି, ତାହା ହିଁ ଆଶ୍ୱାସନାର କଥା ।

କବିଙ୍କ କାବ୍ୟିକ ଉତ୍ତରଣ କାମନା କରିବା ବେଳେ ହଠାତ ମନେ ପଡ଼ିଯାଉଛି ଆଉ ଜଣେ ତରୁଣ କବିଙ୍କ ଦୁଃଖ । ତା' ହେଉଛି– ଓଡ଼ିଆ କବିତା ବହିର ପ୍ରକାଶକମାନେ କବିମାନଙ୍କୁ 'ରୟାଲ୍‌ଟୀ' ଦେବା ତ ଦୂରର କଥା ବରଂ ବହିଟିଏ ପ୍ରକାଶ କରିବା ଲାଗି କବିମାନଙ୍କଠାରୁ

କାଗଜ, ଛାପା ଖର୍ଚ୍ଚ ଓ ପ୍ରଚ୍ଛଦ ଚିତ୍ର ଅଙ୍କନ ପାଇଁ ପଇସା ମଧ୍ୟ ନେଉଛନ୍ତି । ଯେଉଁ କବି ବା ଲେଖକମାନଙ୍କୁ ନେଇ ସମାଜ ଏତେ ଗର୍ବକରେ, ରାଜନୈତିକ ନେତାମାନେ ସେମାନଙ୍କ ଶବ୍ଦକୁ ନେଇ ଖେଳନ୍ତି– ଏକବିଂଶ ଶତାବ୍ଦୀର ଦ୍ୱାରଦେଶରେ ଠିଆ ହୋଇବି କେହି ଏଇ ଶୋଷଣ ଯୋଗୁଁ ଲଜ୍ଜା ଅନୁଭବ କରନ୍ତିନାହିଁ । ସବୁଠୁ ଦୁଃଖଦ— ଏଠି ଜଳସେଚନଠାରୁ ଆରମ୍ଭ କରି ଜଙ୍ଗଲ ବିଭାଗ ମନ୍ତ୍ରୀ (କୌଣସି ବ୍ୟକ୍ତିଙ୍କୁ କୁହାଯାଉନାହିଁ) ପର୍ଯ୍ୟନ୍ତ ସମସ୍ତେ ସାହିତ୍ୟ ଓ ସଂସ୍କୃତି ଉପରେ ସାରଗର୍ଭକ ଭାଷଣ ଦିଅନ୍ତି । କିନ୍ତୁ, ଯୁବକବିଟିର ସାମ୍ପ୍ରତିକ ଦୈନ୍ୟ ସମ୍ପର୍କରେ କେହି ଅବହିତ ଥିବା ପରି ମନେହୁଏନାହିଁ ।

ସରକାରଙ୍କ ସଂସ୍କୃତି ବିଭାଗ କିମ୍ବା ସାହିତ୍ୟ ଏକାଡେମୀ ଏଯାବତ୍ କୌଣସି ଆଖିଦୃଶିଆ ପଦକ୍ଷେପ ନେଇଥିବାର ନଜିର୍ ଏ ଲେଖକ ଜାଣେନାହିଁ । କୌଣସି ଦିବଂଗତ ଲେଖକଙ୍କ ଶ୍ରାଦ୍ଧସଭାର ଆୟୋଜନ କରି ଯଦି ସାହିତ୍ୟ ଏକାଡେମୀ ଖୁବ୍ ଗୋଟାଏ ଚମତ୍କାର କାମ କରୁଛି ବୋଲି ଭାବୁଥାଏ ତେବେ ତାହା ମହାକାଶରେ ଅଙ୍ଗାଳିକାଟିଏ ତୋଳିବା ସଙ୍ଗେ ସମାନ ବୋଲି କହିବାକୁ ହେବ । ଯେଉଁ ଏକାଡେମୀ ଯୁବ ସାହିତ୍ୟିକମାନଙ୍କର ସମସ୍ୟା ବୁଝି ତା'ର ନିଦାନ ଖୋଜିବାରେ ଅସମର୍ଥ ହୁଏ, ତାହାକୁ ଏକାଡେମୀ କହିବା ପରିବର୍ତ୍ତେ 'ଏକ୍ ଡିମ୍' (ଜଣେ ସଂସ୍କୃତି ବିଭାଗ ମନ୍ତ୍ରୀଙ୍କ ଉଚ୍ଚାରଣର ଅନୁସରଣରେ) କହିବା ଶ୍ରେୟସ୍କର ହେବ ।

ଅଧିକାଂଶ ତରୁଣ ଲେଖକ ବା କବିଙ୍କୁ ସେମାନଙ୍କ ପୁସ୍ତକ ପ୍ରକାଶନ ପାଇଁ ପ୍ରକାଶକ ଖୁବ୍ କମ୍‌ରେ ପାଞ୍ଚହଜାରରୁ ଦଶହଜାର ଟଙ୍କା ଯାଏଁ ନେଉଥିବାର ଦୁଃଖଦ କାହାଣୀ ଅନେକ ତରୁଣ ଲେଖକ କହିଛନ୍ତି ଏ ଲେଖକକୁ ।

ସରକାର କିମ୍ବା ସାହିତ୍ୟ ଏକାଡେମୀ ଏ ସମ୍ପର୍କରେ କୌଣସି

ନୂତନ ଖସଡ଼ା ପ୍ରସ୍ତୁତ କରି ଯୁବକବିମାନଙ୍କୁ ସାମ୍ପ୍ରତିକ ଅତ୍ୟାଗ୍ନିରରୁ ମୁକୁଳାଇ ପାରିବେ ବୋଲି ଆଶା । ବିଡ଼ମ୍ବନାର କଥା, ଯେଉଁ ତରୁଣ କବିମାନେ ସମାଜର ସମସ୍ତ ଅନ୍ଧକାରକୁ ଦୂର କରି ନୂତନ ସୂର୍ଯ୍ୟୋଦୟକୁ ସେମାନଙ୍କ କବିତାରେ ସ୍ୱାଗତ କରନ୍ତି, ସେମାନେ ନିଜେ ନିଜ ଅଲକ୍ଷ୍ୟରେ ସେଇ ଅମା ଅନ୍ଧକାରକୁ ହିଁ ଆଲିଙ୍ଗନ କରିଥାନ୍ତି । କବିତାର ପ୍ରତିବଦ୍ଧତା ସେମାନଙ୍କ ଜୀବନ ପାଇଁ ତୋଳି ଆଣେ ଅପାର ଶୂନ୍ୟତା । ପ୍ରତିପାଳନ ପରିବର୍ତ୍ତିତ ହୋଇ ରୂପ ନିଏ ପ୍ରତାରଣାର । ପୁଣି ସେଇ ଲୋକଗୀତ ମନେପଡ଼େ–

ଏ କଥା କହିବି କାହାକୁ,
ପୁଅ ପାଇଁ ଯେଉଁ ଆହାର ଆଣିଲି
ଆହାର ଖାଇଲା ପୁଅକୁ ।

କିନ୍ତୁ ଏହାର ଶେଷ କେଉଁଠି ? ହୁଏତ ଅଛି । ଯେତେବେଳେ ଉଚ୍ଚାରଣ ଓ ଆଚରଣରେ ଆମର ଫାଙ୍କ ରହିବ ନାହିଁ, ଯେବେ ଆମର ସୃଜନ ଓ କୂଜନ ଭିତରେ ସମନ୍ୱୟ ରହିପାରିବ ।

ଏସବୁ ପ୍ରତିକୂଳ ପରିସ୍ଥିତି ସତ୍ତ୍ୱେ କବି ସତ୍ୟନାରାୟଣ ଗନ୍ତାୟତଙ୍କ 'ଥୁଣ୍ଟାଗଛ'ଟି ଯେ ପଲ୍ଲବିତ ହେବ– ଏଇ ବିଶ୍ୱାସ ରଖିବା ଛଡ଼ା ଅନ୍ୟ କ'ଣ ଉପାୟ ଅଛି ?



# ଜ୍ଞାନ ଓ ପାପ

ଥରେ ଜଙ୍ଗଲର ପଶୁପକ୍ଷୀମାନେ ଗୋଟାଏ ସଭା କରି ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତିଟିଏ ନେଲେ। ମଣିଷଜଗତ ପରି ସେମାନେ ବି ସେମାନଙ୍କର ଜ୍ଞାନ ଓ କୌଶଳକୁ ବଢ଼ାଇବା ପାଇଁ ଏକ ବିଦ୍ୟାଳୟ ଖୋଲିବାପରେ ପ୍ରତିଯୋଗିତାଟିଏର ଆୟୋଜନ କଲେ— ଦୌଡ଼, ସନ୍ତରଣ, ବୃକ୍ଷାରୋହଣ ଏବଂ କୁଦିବାର। ଏଇ ପ୍ରତିଯୋଗିତାରେ ଭାଗ ନେବାଲାଗି ଯେଉଁ ପ୍ରମୁଖ ଖେଳାଳିମାନେ ଆଗେଇ ଆସିଲେ ସେମାନଙ୍କ ମଧ୍ୟରେ ଥିଲେ– ଶଶକ, ଗୁଣ୍ଡୁଚି, ଓଧ, ମାଛ ଏବଂ ସର୍ବୋପରି ଅପେକ୍ଷାକୃତ ସ୍ୱଳ୍ପ ଧୀଶକ୍ତିସମ୍ପନ୍ନ ତୋଡ଼ିମାଛଟିଏ। ପ୍ରଥମେ ସୁଯୋଗ ମିଳିଲା ଶଶକକୁ। ଖୁବ୍ ଦ୍ରୁତଗତିରେ ଦୌଡ଼ିବା ସହ ଦୌଡ଼ରେ ନିଜ ଜାତିର ଗୌରବକୁ ଅକ୍ଷୁର୍ଣ୍ଣ ରଖିପାରିଥିଲା ସେ। ମାତ୍ର ସନ୍ତରଣ ଓ ବୃକ୍ଷାରୋହଣ କଥା ପଡ଼ିବାବେଳେ ଗୋଟାଏ ଅହେତୁକ କମ୍ପ ଖେଳିଗଲା ତା'ର ସର୍ବାଙ୍ଗରେ ଯିମିତି। ଯେତେବେଳେ ଗୁଣ୍ଡୁଚିଟିକୁ ଏଥିପାଇଁ ସୁଯୋଗ ଦିଆଗଲା, ଦେଖାଗଲା ଯେ ଦୌଡ଼ ଏବଂ ବୃକ୍ଷାରୋହଣରେ ଖୁବ୍ ଭଲ ନମ୍ବର ରଖିଥିଲେ ବି ସନ୍ତରଣରେ ସେ ଫେଲ୍ ହୋଇଯାଇଛି।

ଅପରପକ୍ଷରେ ଓଧଟି ସନ୍ତରଣରେ ଖୁବ୍ ଭଲ ଖେଳ ପ୍ରଦର୍ଶନ କରିଥିଲେ ହେଁ ଦୌଡ଼ ଏବଂ ବୃକ୍ଷାରୋହଣରେ ଖୁବ୍ ଖରାପ କରିଥିଲା । ଖେଳ ଶେଷ ହେବା ପରେ କିନ୍ତୁ ଯେଉଁ ଘଟଣାଟି ସମସ୍ତଙ୍କୁ ଚମତ୍କୃତ କରିଥିଲା, ତା' ହେଲା— ପ୍ରତିଯୋଗିତାରେ ସର୍ବଶ୍ରେଷ୍ଠ ଖେଳାଳି ହେବାର ସୌଭାଗ୍ୟ ମିଳିଥିଲା ତୋଡ଼ିମାଛକୁ । ପ୍ରକୃତ ରହସ୍ୟ ହେଲା— ଶଶକ, ଓଧ, ଗୁଣ୍ଡୁଚି ଓ ମାଛ ପ୍ରତ୍ୟେକ ନିଜର ପାରମ୍ପରିକ ଖେଳରେ ଜଣେ ଜଣେ ଓସ୍ତାଦ୍ ଥିଲେ ବି ସବୁ ବିଭାଗର ଖେଳର ହାରାହାରି ଫଳାଫଳ ଅନୁଯାୟୀ ସବୁ ବିଭାଗରେ ଅଳ୍ପ ଅଳ୍ପ ଅଭିଜ୍ଞତା ଥିବା ତୋଡ଼ିମାଛ ହିଁ ହାରାହାରି ଫଳାଫଳରେ ଶୀର୍ଷସ୍ଥାନ ଅଧିକାର କରି ଗୌରବମଣ୍ଡିତ ହୋଇ ପାରିଥିଲା ।

ମଣିଷଜଗତର ଅବସ୍ଥାଟି ମଧ୍ୟ ଏବେ ଠିକ୍ ସେଇପରି । କେତୋଟି ଦଶନ୍ଧି ତଳେ 'ବୁଦ୍ଧିମାନ' ବାଳକର ଯେଉଁ ପାରମ୍ପରିକ ସଂଜ୍ଞାଟି ଥିଲା, ତାହା କେବଳ ତା'ର ପଠନାଭ୍ୟାସକୁ ନେଇ ବିଗ୍ଚର କରାଯାଉଥିଲା । ନୃତ୍ୟ, ସଂଗୀତ, ଚିତ୍ରକଳା ଅଥବା ଅନ୍ୟ କୌଣସି ବିଭାଗରେ ତା'ର ପ୍ରବେଶ ଓ ଦକ୍ଷତାକୁ ଆଦୌ ବିଗ୍ଚରକୁ ନିଆଯାଉନଥିଲା । ଏବେ ଅବଶ୍ୟ ସମୟ ବେଶ୍ ବଦଳିଯାଇଛି । 'ପ୍ରତିଭା'ର ସଂଜ୍ଞାର ବଳୟଟି ଏବେ ସୁଦୂରପ୍ରସାରୀ ହୋଇଛି ।

ପ୍ରତି ଯୁଗରେ ବୟସ୍କମାନେ ପ୍ରାୟତଃ ଗୋଟାଏ କଥା କହିବାର ଲକ୍ଷ୍ୟ କରାଯାଏ : ଆମ ପିଲାଦିନେ ଯାହାସବୁ ଘଟୁଥିଲା ଏବେ ସେ ସବୁର ଅଧଃପତନ ଘଟିଛି । ନିଜ ସମୟର ଶିକ୍ଷାପ୍ରଣାଳୀରେ କଠିନ ବ୍ୟବସ୍ଥା, ସାମାଜିକ ମୂଲ୍ୟବୋଧ ଓ ମଣିଷପଣିଆ ହିଁ ସେମାନଙ୍କ ବକ୍ତବ୍ୟର ଅସଲ କଥା ଥିଲା । କିନ୍ତୁ ସାମ୍ପ୍ରତିକ କାଳର ଶିଶୁମାନଙ୍କ ଧୀଶକ୍ତି ଯେ ପ୍ରଚଣ୍ଡ ଭାବେ ବଢ଼ିବାକୁ ଆରମ୍ଭ କରିଛି, ଏ କଥା ଏବେ ପ୍ରକାଶ କରିଛନ୍ତି ପ୍ରସିଦ୍ଧ ଖବରକାଗଜ 'ନିଉୟର୍କ୍ ଟାଇମ୍ସ୍' । ଏହା

ଯେ ବଂଶାନୁକ୍ରମିକ ନୁହେଁ, ଏ କଥା ବି ସ୍ପଷ୍ଟ ହୋଇଯାଇଛି । କାରଣ, ଶିଶୁମାନଙ୍କ ମାନସିକ ବିକାଶ ଘଟିଛି ଏଇ ଅଳ୍ପ କେତେବର୍ଷ ଭିତରେ । ଏହାର କାରଣ ଦର୍ଶାଇବାକୁ ଯାଇ ମନୋବୈଜ୍ଞାନିକମାନେ କୁହନ୍ତି– ପୁଷ୍ଟିଯୁକ୍ତ ଖାଦ୍ୟ, ସହରୀ ସଭ୍ୟତା, କ୍ଷୁଦ୍ର ପରିବାର, ବିଭିନ୍ନ ପରୀକ୍ଷାଜନିତ ଅଭିଜ୍ଞତା ତଥା ଟେଲିଭିଜନ୍ ଓ ଭିଡିଓ ଖେଳ ଆଦି ଶିଶୁର ମସ୍ତିଷ୍କକୁ ସତେଜ ରଖିବାରେ ସହାୟକ ହୋଇଥାଏ ।

ପାରିପାର୍ଶ୍ୱିକ ପରିବେଶର ପ୍ରଚଣ୍ଡ ପ୍ରଭାବ ଆଜିର ଶିଶୁର ମାନସିକ ବିକାଶରେ ଯେପରି ସାହାଯ୍ୟ କରିପାରୁଛି, ସେସବୁର ଅଭାବ ରହିଥିଲା ଊନବିଂଶ ଶତାବ୍ଦୀରେ । ସେଇଥିପାଇଁ କର୍ନେଲ୍ ବିଶ୍ୱ-ବିଦ୍ୟାଳୟ ମନୋବିଜ୍ଞାନ ବିଭାଗର ଅଧ୍ୟାପକ ଡଃ ଓ୍ୱିଲ୍‌ରୀଚ୍ ନିସର୍ କୁହନ୍ତି: ''ଆମେ ଏବେ ଏକ ସୁବର୍ଣ୍ଣ ଯୁଗରେ ପହଞ୍ଚିସାରିଛୁ । ଯେଉଁଠି ପ୍ରତିଟି ମଣିଷ କୌଣସି ନା କୌଣସି ବାଟରେ ତା'ର ଉତ୍କର୍ଷତା ପ୍ରତିପାଦନ କରିପାରୁଛି ।''

ପ୍ରକୃତିର ଗୋଟାଏ ଅଦୃଶ୍ୟ ନିୟମ ମଧ୍ୟ ରହିଛି । ପରିସଂଖ୍ୟାନରୁ ଜଣାଯାଏ, ପୃଥିବୀର ସମଗ୍ର ଲୋକସଂଖ୍ୟାର ପ୍ରାୟ ପାଞ୍ଚ ପ୍ରତିଶତ ହେଉଛନ୍ତି ଖୁବ୍ ବୁଦ୍ଧିମାନ୍ ଏବଂ ପାଞ୍ଚ ପ୍ରତିଶତ ହେଉଛନ୍ତି ଖୁବ୍ ବୋକା ଲୋକ । ଠିକ୍ ସେଇପରି ଶତକଡ଼ା ପାଞ୍ଚଭାଗ ଡେଙ୍ଗା ଓ ପାଞ୍ଚଭାଗ ଗେଡ଼ା, ପାଞ୍ଚ ପ୍ରତିଶତ ପେଟୁ ଓ ପାଞ୍ଚପ୍ରତିଶତ ସ୍ୱଳ୍ପାହାରୀ, ପାଞ୍ଚ ପ୍ରତିଶତ ଖୁବ୍ ଭଲ ଲୋକ ଓ ପାଞ୍ଚ ପ୍ରତିଶତ ଖୁବ୍ ଖରାପ ଲୋକ । ଏକଥା କହିବାର ଉଦ୍ଦେଶ୍ୟ ହେଉଛି ଆମ ପୃଥିବୀର ଅଧିକାଂଶ ଲୋକଙ୍କର (ପ୍ରାୟ ନବେ ପ୍ରତିଶତ) ଧୀଶକ୍ତି, ଉଚ୍ଚତା, ଭୋଜନ ପରିମାଣ ଓ ଚରିତ୍ର ଇତ୍ୟାଦି ପ୍ରାୟତଃ ସମାନ । ଏହାକୁ ସମାଜବିଜ୍ଞାନୀମାନେ କମନ୍ କର୍ଭ୍ ସାଣ୍ଡ୍ରୋମ୍ (Common Curve Syndrome) ଭାବେ ଅଭିହିତ କରିଛନ୍ତି । ମାତ୍ର କର୍ନେଲ୍ ବିଶ୍ୱବିଦ୍ୟାଳୟର ମାନବ ବିକାଶ

ବିଭାଗ ଅଧ୍ୟାପକ ଡଃ ଡବ୍ଲ୍ୟୁ.ଏମ୍. ଉଇଲିୟମ୍‌ସ୍‌ଙ୍କ ପରୀକ୍ଷାନୁଯାୟୀ ମଣିଷର ଧୀଶକ୍ତିକୁ ପ୍ରବହ (ଉଭୟ ତରଳ ଓ ଗ୍ୟାସୀୟ– Fluid) ଏବଂ ସ୍ଫଟିକ (Crystalised) ଦୁଇଭାଗରେ ବିଭକ୍ତ କରାଯାଇଛି। ପ୍ରବହ ଧୀଶକ୍ତି କୌଣସି କାର୍ଯ୍ୟ କରିବାକୁ ସାମର୍ଥ୍ୟ ଯୋଗାଇବା ବେଳେ ସ୍ଫଟିକ ଧୀଶକ୍ତି କୌଣସି ସୂଚନା ବା ଖବରକୁ ନିଜ ପାଖରେ ଗଚ୍ଛିତ ରଖିବା ପାଇଁ ସାହାଯ୍ୟ କରିଥାଏ। ଡଃ ଉଇଲିୟମ୍‌ସ୍‌ଙ୍କ ଭାଷାରେ– "ଯଦିଓ ୧୯୩୦ ମସିହାର କୌଣସି ବାଳକ ସାମ୍ପ୍ରତିକ ବାଳକଠାରୁ ଆଦୌ ଅଧିକ ଧୀଶକ୍ତିସମ୍ପନ୍ନ ନୁହେଁ ତେବେ ସ୍ଫଟିକ ଧୀଶକ୍ତି (Crystalised Intelligence) ପରୀକ୍ଷାରେ ୧୯୩୦ ମସିହାର ବାଳକଟି ସାମ୍ପ୍ରତିକ କାଳର ବାଳକଠାରୁ ଆଗୁଆ ରହିବ। ଏଇ ପରୀକ୍ଷାକୁ ସେ 'ଦି ରାଇଜିଙ୍ଗ୍ କର୍ଭ୍' (The Rising Curve) ଆଖ୍ୟା ଦେଇଛନ୍ତି।

ଜ୍ଞାନ ହିଁ ପାପ କରିବା ଲାଗି ମଣିଷକୁ ରାସ୍ତା ଦେଖାଇଥାଏ। ଆଜିର ଶିଶୁ ବା କିଶୋର ଯେ ତା'ର ପୂର୍ବସୂରୀଙ୍କ ଠାରୁ ଅଧିକ ଜ୍ଞାନର ଅଧିକାରୀ ଏଥିରେ କାହାରି ମତାନ୍ତର ହେବାର ଆଶଙ୍କା ନାହିଁ। ମାତ୍ର ଆଜିର ଜ୍ଞାନ ତଥା ଜ୍ଞାନପ୍ରଦାନ କରୁଥିବା ପରିବେଶ ଯେ, ସମ୍ପ୍ରତି କିଶୋରମାନଙ୍କୁ ଅଧିକତର ହିଂସାମୁଖୀ କରୁଛି ତାହା ହିଁ ଚିନ୍ତାର ବିଷୟ। ଜ୍ଞାନର ଅଧିକାରୀ ହେବା ସହ ଏହାକୁ ସମାଜର ମଙ୍ଗଳ ପାଇଁ ନିୟୋଜିତ କରିପାରିଲେ ଜୀବନ ଆହୁରି ସୁଖକର ହେଇପାରିବ, ଏଥିରେ ସନ୍ଦେହ ନାହିଁ।



